ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍ ଦ୍ୱାରା ପ୍ରଣ[redacted]ାର ଅଭିନୀତ
ଏବଂ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ।

# ଅଗ୍ନି-ପରୀକ୍ଷା

[ ସାମାଜିକ ନାଟକ ]

ଶ୍ରୀ ଭଞ୍ଜକିଶୋର ପଟ୍ଟନାୟକ, ବି. ଏ.

## ଉତ୍କଳର ଖ୍ୟାତନାମା କବି ସୁସାହିତ୍ୟିକ ଏବଂ ବିଶିଷ୍ଟ ଶିକ୍ଷାବିତ୍ ଡକ୍ଟର ମାନସିଂହଙ୍କର ଅଭିମତ

ଉଦୀୟମାନ ନାଟକ ଲେଖକ ଶ୍ରୀମାନ୍ ଭଞ୍ଜକିଶୋର ପଟ୍ଟନାୟକଙ୍କର କେତୋଟି ନାଟକର ଅଭିନୟ ଦେଖି ମୁଁ ଆନନ୍ଦ ଲାଭ କରିଛି । ତାଙ୍କ ନାଟକଗୁଡ଼ିକର ପ୍ଲଟ୍‌ରେ ନୂତନତ୍ୱ ଓ ଆଦର୍ଶବାଦର ସ୍ପର୍ଶ ମୁଁ ଦେଖି ପାଇଛି । 'ଅଗ୍ନି-ପରୀକ୍ଷା' ନାଟକର ବୃଦ୍ଧ ବୈଜ୍ଞାନିକ ଡକ୍ଟର ଦାସ ମନୁଷ୍ୟକୁ କ୍ଷୁଧା ଦାଉରୁ ରକ୍ଷା କରିବାକୁ ଗବେଷଣା କରିବା ଏକ ନୂତନ କଳ୍ପନା ! ସମସ୍ତ ପ୍ରଲୋଭନ ମଧ୍ୟରେ ରହି ମଧ୍ୟ ନିଷ୍କଳଙ୍କ ରହି ପରୋପକାରରେ ଆତ୍ମୋତ୍ସର୍ଗ କରିବା ନୂଆ ଜଗତର ତରୁଣ 'ସାଗର' ଚରିତ୍ର ଦେଇ ଯୁବକ ସମାଜ ଆଗରେ ଆଉ ଏକ ଆଦର୍ଶ । ପେଶାଦାର ରଙ୍ଗମଞ୍ଚର ଅଙ୍ଗୁଳି ନିର୍ଦ୍ଦେଶ ନ ଥିଲେ, ନାଟ୍ୟକାର ଲଘୁ ଓ ରୋମହର୍ଷଣ ଘଟଣାବଳୀ ପୂରାଇ ଲେଖାକୁ ଏକାନ୍ତରେ 'ନାଟକୀୟ' କରିବାକୁ ଚେଷ୍ଟା ନ କରି, ଚରିତ୍ର ଗୁଡ଼ିକର ସ୍ୱାଭାବିକ ମାନସିକ ସଂଘର୍ଷ ମଧ୍ୟ ଦେଇ, ସେଗୁଡ଼ିକୁ ଅଧିକ ଜୀବନ୍ତ କରିବାକୁ ବୋଧହୁଏ ଚେଷ୍ଟା କରିଥାନ୍ତେ । ତଥାପି ଅସୀତାର ଜୀବନରେ ସଂଘର୍ଷର ଅଭିନୟ ବେଶ୍ ଫୁଟିଛି । ସାଗର ଓ ଅସୀତା ଅଗ୍ନି-ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛନ୍ତି ।

ଭଞ୍ଜକିଶୋର କ୍ଷେତ୍ରରେ ଲେଖମାର ଅଧିକାରୀ । ମୋର ଆଶା ସେହି ଲେଖନୀ ଉତ୍ତରୋତ୍ତର ଉପଯୁକ୍ତ ହେବ ।

କଟକ

ତା ୨୮ । ୯ ।୫୭

ମାୟାଧର ମାନସିଂହ

ବ୍ୟବସାୟ ସୂତ୍ରରେ ଅଭିନୟ ସ୍ୱତ୍ୱ ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍‌ଙ୍କର ।
ଅନ୍ୟଥା ଲେଖକଙ୍କର ଅନୁମତି ସାପେକ୍ଷ ।

# ଅନ୍ନପୂର୍ଣ୍ଣା ୧୯୫୭ 'ବ' ଗ୍ରୁପ୍ ଦ୍ୱାରା ଅଭିନୀତ

ସଙ୍ଗଠନରେ :—

ସଙ୍ଗୀତ—ଶ୍ରୀ ଗୋପୀନାଥ ସେନାପତି

ସ୍ୱର-ଯୋଜନା—ଶ୍ରୀ ବାଳକୃଷ୍ଣ ଦାଶ

ନୃତ୍ୟ-ପରିକଳ୍ପନା—ଶ୍ରୀ ଲିଙ୍ଗରାଜ ନନ୍ଦ

ନୃତ୍ୟ-ପରିଚାଳନା—ଦେବଦାସ

ଆବଦ୍ଧ ସଙ୍ଗୀତ—ଲକ୍ଷ୍ମୀଧର, ଗୋପାଳ, ହରି, ଗୋବର୍ଦ୍ଧନ ଓ ମଜୁମ୍‌ଦାର୍

ସ୍ମାରକ—ବସନ୍ତ ଓ କେଶବ

ଆଲୋକ—ପଞ୍ଚାନନ ନନ୍ଦ

ରୂପ-ସଜ୍ଜା—ସରକାର୍‌ବ୍ରଦର୍ସ୍

ପ୍ରୋପ୍ରାଇଟର—ଶ୍ରୀ ଲିଙ୍ଗରାଜ ନନ୍ଦ

ମ୍ୟାନେଜର—ଶ୍ରୀ ରାଜକିଶୋର ମହାନ୍ତି

ନିର୍ଦ୍ଦେଶକ

ଶ୍ରୀ ସାମୁଏଲ ସାହୁ (ବାବା)

ଭୂମିକାରେ :—

ଊକ୍‌ଟର ଦାସ—ଉମାନାଥ

ଅଚ୍ୟୁତ—କେଶବ

ସାଗର—ବାବା

ପୀତବାସ—ପିର

ଅଘୋର—ପୂର୍ଣ୍ଣ

ଶଙ୍କର—ମାଧବ

ସନ୍ତୋଷ୍—ଜଗନ୍ନାଥ

ବନ୍ଧୁ—ପଦ୍ମ ଚରଣ

ଗୋବିନ୍ଦ—ମଧୁ ପଟ୍ଟନାୟକ

ଡ୍ରାଇଭର—ବୁଡ଼ା ଚୌଧୁରୀ

ଅସୀମା—ଲୀଳା ଦୁଲାଲୀ

ଶ୍ୟାମାଙ୍ଗୀ—ଉମାଶଶୀ

ସୁଭଦ୍ରାଙ୍ଗୀ—କୃଷ୍ଣପ୍ରିୟା

ଅଳକା—ମଞ୍ଜୁଳା

ଯମୁନା—ମାନଦା

ବୃନ୍ଦା—ସୁଲୋଚନା

ବୈଷ୍ଣବ—ଗୋପାଳ

ନର୍ତ୍ତକୀରେ—ରୁକ୍ମଣୀ, ଆଶା, ସରୋଜିନୀ ଓ ରମ୍ଭା

# କୃତଜ୍ଞତା ଜ୍ଞାପନ

ମୋର 'ଅଗ୍ନି-ପରୀକ୍ଷା' ନାଟକକୁ ସର୍ବାଙ୍ଗସୁନ୍ଦର କରି ପରିବେଷଣ କରିଥିବାରୁ ମୁଁ ଅନ୍ନପୂର୍ଣ୍ଣା 'ବି' ଗ୍ରୁପର କର୍ମକର୍ତ୍ତା, ଅଭିନେତା ଓ ଅଭିନେତ୍ରୀମାନଙ୍କୁ ଧନ୍ୟବାଦ ଦେଉଛି । ସଙ୍ଗୀତ ଲେଖକ ଶ୍ରୀ ଗୋପୀନାଥ ସେନାପତି ଓ ମଞ୍ଚ-ଶିଳ୍ପୀ ସରକାର ବାବୁ ମଧ୍ୟ ଧନ୍ୟବାଦାର୍ହ । ପରିଶେଷରେ ମୋର ପରମବନ୍ଧୁ ନିର୍ଦ୍ଦେଶକ ଶ୍ରୀ ସାମୁଏଲ ସାହୁ (ବାବ) ତାଙ୍କର ସମସ୍ତ ଶକ୍ତି ଦେଇ ଏହି ନାଟକକୁ ଗୌରବ-ଶ୍ରୀ-ମଣ୍ଡିତ କରିଥିବାରୁ ମୁଁ ତାଙ୍କୁ ଅନ୍ତରର କୃତଜ୍ଞତା ଜଣାଉଛି ।

ମଳୟ ନିଳୟ,
ନାହାଳି, କଟକ-୨ — ଭଞ୍ଜକିଶୋର
ତା ୨୮।୨।୮୬

# ପ୍ରଥମ ଅଙ୍କ

## —ପ୍ରଥମ ଦୃଶ୍ୟ—

[ ଡ଼କ୍‌ଟର ଦାସଙ୍କ ଘର । ପରଦା ଉଠିଲା ପରେ ଦେଖାଗଲା କାଚ ଝରକା ଆର ପାଖରେ ଅନ୍ୟ ଗୋଟିଏ ରୁମ୍‌ରେ ଡକ୍‌ଟର ଦାସ ଯନ୍ତ୍ରପାତି ନେଇ କ'ଣ ଗୋଟାଏ ପରୀକ୍ଷା କରିବାରେ ବ୍ୟସ୍ତ ଥିଲେ । ତାଙ୍କ ନାତୁଣୀ ଅସୀତା ଚା' ନେଇ ଆସିଲେ । ]

ଅସୀତା — ଅଜା !

ଡ: ଦାସ—( ମନକୁ ମନ କହି କହି ଆସିଲେ ) ବ୍ୟୋମଯାନରେ ଉଡିବା ଯଦି ସହଜ ହୁଏ, ମଙ୍ଗଳ ଗ୍ରହରେ ଉପନୀତ ହେବା ଯଦି ସମ୍ଭବ ହୁଏ, tube ଦେଇ ମଣିଷ ପିଲାର ଜନ୍ମ ଯଦି ସତ୍ୟ ହୁଏ; ତାହେଲେ ମୁଁ ସଫଳ ନ ହେବି କାହିଁକି ? ନିଶ୍ଚୟ ହେବି । ନେପୋଲିୟନଙ୍କ କଥାରେ ଏକମତ ହୋଇ ମୁଁ କହିବି. ଅସମ୍ଭବ ବୋଲି ଦୁନିଆରେ କିଛି ଥାଇ-ପାରେ ନା ! ( କହୁ କହୁ ଟେବୁଲ ଉପରେ ଥିବା ଖଣ୍ଡେ ବଡ଼ ବହି ଖେଳାଇ ପକାଇଲେ ) ନିଶ୍ଚୟ ହବ···ହା···ହା···ହା···

ଅସୀତା—ତୁମ ଚା’ ଥଣ୍ଡା ହୋଇଯିବ ଅଜା !

ଡ଼:ଦାସ—ଆରେ ଅସୀତା, ତୁ ଚା’ ନେଇ ଛିଡ଼ା ହୋଇଚୁ । ଦେ, ଦେ·····(ଚା’ ନେଇ ପିଇଲେ)

ଅସୀତା—କ’ଣ ହବ ବୋଲି କହୁଥିଲ ଅଜା ?

ଡ଼:ଦାସ—ଆରେ, ସଂସାର···ସଂସାର ଜୀବ-ଜଗତ କଥା କହୁଚି ଲୋ ବୁଢ଼ୀ ! ସତସତ୍ରେ କ’ଣ ବାଉଆ ପିଠା ହୋଇ ମରିଯିବେ ?

ଅସୀତା—ସେ କି କଥା ଅଜା ? କେତେ ବଡ଼ ବଡ଼ achievement ମଣିଷ ଆଜି କରି ପାରୁଚି ! Everestକୁ ଜୟ କରିବା ମଧ୍ଯ ତା’ ପକ୍ଷରେ ଅସାଧ୍ୟ ହୋଇନି ଆଜି !

ଡ଼:ଦାସ—ଜାଣେ ମା, ମଙ୍ଗଳଗ୍ରହକୁ ଗ୍ରାସ କରିବାକୁ ବି ମଣିଷ ଆଜି ଜିଭ ବଢ଼େଇଚି । ଖାଇ ଖାଇ ଏତେ ବଡ ପୃଥିବୀଟା ତାକୁ ଅଣ୍ଟିଲାନି ଯେ ପରମାଣୁ ଶକ୍ତିକୁ ବି ସେ ଖାଇ ହଜମ କରିବାକୁ ବସିଚି । ( ପକେଟରୁ ବାହାର କରି ଚକୋଲେଟ୍ ଦେଲେ ) ନେ,ତୁ ପାଟିରେ ପକା । ହା···ହା···ହା···କେମିତି ? ମିଠା ? ( ହସିଲେ )

ଅସୀତା—ସବୁଦିନେ ଖାଲି କଅଁଳା ପିଲାଙ୍କ ପରି ମତେ ଚକୋଲେଟ୍ ଭଣ୍ଡେଇବ !

ଡ଼:ଦାସ—ନା,ନା, ଖୁବ୍ ବଡ଼ ହୋଇ ଯାଇଚୁ ଯେତେବେଳେ ଏଥର ଆଉ ଚକୋଲେଟ୍ ନୁହେଁ ମା, ଏଥର ମେଟ୍ରିଏ···ମାନେ···

ଅସୀତା—ଥାଉ ଅଜା, ମାନେ ବୁଝାଇବା ଦରକାର ନାହିଁ, ମୁଁ ବୁଝିଚି । ଘରି ଚିନ୍ତା ତୁମର, ନା ?·····

ଡ଼: ଦାସ—ନାଇଁ ମା, ଖାଇବା ଚିନ୍ତା ଯଦି ସଂସାରେ ନଥାନ୍ତା, ତା ହେଲେ ଅନ୍ୟ ଚିନ୍ତାକୁ ପଚୁରେ କିଏ ? କ୍ଷୁଧା ହିଁ ଏସୃଷ୍ଟିକୁ ଖାଇଚି !

ଅସୀତା—(ହସିଦେଇ) ଅଜା, ନେପ୍ସ ଚମ ପାଠ ।

ଡ଼: ଦାସ—ହେଲେ···ଏ ପାଠର ଶେଷ ନାଇଁ ମା, ବହୁତ ଖଣ୍ଡି-ଚକଟି, ଖୋଜ ଲୋଡ଼ ନଉଂଟନ୍‌ଙ୍କ ଭାଷାରେ ସେଇ 'ଉପଳଖଣ୍ଡ' ବ୍ୟଣ୍ଡିତ ମୁଁ ଆଜ ବନ୍ଧୁ ପାଇନି । ଜୀବନର ଦୀର୍ଘ ଚାଳିଶ ବର୍ଷର ସାଧନା ମୋର ଏପର୍ଯ୍ୟନ୍ତ······

ଅସୀତା—ସାଧନାର ସମାପ୍ତି ତ ବୈଜ୍ଞାନିକ ଜୀବନରେ ହୁଏ ନାଇଁ ଅଜା, ଅନନ୍ତ ସାଧନାରେ ଯେ ତା'ର ମୁକ୍ତି ! ଶିଳ୍ପୀ ଜୀବନରେ ପୂର୍ଣ୍ଣତା କାହିଁ ?

ଡ଼: ଦାସ—ସେ କଥା ତୁ କହନାଇଁ ମା, ଏ ନିଷ୍ଠୁର ସତ୍ୟକୁ ଗ୍ରହଣ କରିନେଲେ ମୋ ସାଧନା ଯେ ଚିରଦିନ ଲାଗି ବିଫଳତାର କଳଙ୍କରେ ଜର୍ଜରିତ ହୋଇ ରହିଯିବ ମା ! (ଆର୍ଦ୍ର କଣ୍ଠରେ) ମୁକ୍ତି ମୁଁ ଚାହୁନାଇଁ, ମୁଁ ଚାହୁଁଛି ସନ୍ଧାନ, ମୁଁ ଚାହୁଁଚି ସମାଧାନ ! (ଦୃଢ଼ତା ଥିଲା କଣ୍ଠରେ)

ଅସୀତା—ଅଜା ଏହା କ'ଣ ସମ୍ଭବ ? ସୃଷ୍ଟିର ଅତି ବଡ ସତ୍ୟକୁ ଅସ୍ୱୀକାର କରି······ତୁମେ କ'ଣ ଯଶସ୍ୱୀ ହୋଇପାରିବ ?

ଡ଼: ଦାସ—ଦେଖ୍ ମା, ଇଂଲଣ୍ଡ ବା ଆମେରିକା ଭଳି କୌଣସି ସରକାରୀ ବା ବେସରକାରୀ ସାହାଯ୍ୟ ମତେ ଦିଆ ଯାଇନି । ବର୍ଷ ବର୍ଷ ଧରି ନିଜର କଠୋର ଅଧ୍ୟବସାୟ ଓ ଅଭିଜ୍ଞତା ଉପରେ ଏ ଦେଶର ଜଣେ ଅନାମଧେୟ ବୈଜ୍ଞାନିକ ମୁଁ······ ମୋର ପୂର୍ଣ୍ଣ ଭରସା ଅଛି ଅସୀତା, ମୁଁ ନିଶ୍ଚୟ ସିଦ୍ଧାନ୍ତରେ

ଯାଇ ପହଞ୍ଚିବ । ଏ ସମଗ୍ର ପୃଥିବୀର ଅଧିବାସୀ···ମନୁଷ୍ୟ ଜାତିର ଅନ୍ତତଃ କିଛି ସେବା ମୁଁ କରିପିବ !

ଅସୀତା—( ଅଜାଙ୍କର ଉତ୍ତେଜନାରେ ଉଦ୍ଭ୍ରାନ୍ତ ହୋଇ ) ଅଜା !

ଡ଼:ଦାସ—ହଁ ଅସୀତା, ନିଜ ଉପରେ ଅଗାଧ ବିଶ୍ୱାସ ମୋର ଅଛି । ଶ୍ମଶାନ-ଯାତ୍ରା ପୂର୍ବରୁ, ସଂସାର-ଯାତ୍ରା ପଥକୁ ମୁଁ କିଛିପୁ କୁସୁମିତ କରିପିବ ।

ଅସୀତା—ତୁମେ ଜୟୀ ହୁଅ, ଅଜା ! ପିଲାଲୋକ ମୁଁ, ତୁମକୁ କଲ୍ୟାଣ କରିବାର ଅଧିକାର ମୋର ନାହିଁ । ତେବେ ବି—ତେବେ ବି ମୁଁ ······

ଡ଼:ଦାସ—କିଏ କହିଲା ନାହିଁ ? ମା ତା'ର ଟିକି ପୁଅକୁ ଯଦି କଲ୍ୟାଣ ନ କରିବ, ସାରା ସୃଷ୍ଟିରେ କଲ୍ୟାଣ କରିବାର ଅଧିକାର ଆଉ କାହାର ଅଛି ଅସୀତା ? ( ହସିଲେ )

ଅସୀତା—( ଦୁଷ୍ଟାମି ଭରା ଇଙ୍ଗିତରେ ) ଅଜା, ମୁଁ କ'ଣ ତମର 'ଟିକି ମା' ନୁହେଁ ?

ଡ଼:ଦାସ— କିଏ ମନା କରୁଚିରେ ମା ? ସତ କହୁଚି, ଦେଖିବୁ ରହ, ତତେ ମୁଁ ଠିକ୍ ଲୋକ ହାତରେ ଦେଇଦେବି ।

ଅସୀତା—ପୁଣି ? ଆଚ୍ଛା ଅଜା, ( ଅଭିମାନରେ ) ହସି ଖେଳ ତୁମ ସାଙ୍ଗରେ ଦିନ କଟାଉଚି, ସେ ତମକୁ ମୋଟେ ଭଲ ଲାଗୁନି, ନା ? ନହେଲେ ସବୁବେଳେ ପାଖରୁ ତଡ଼ି ଦବାକୁ କୁହନ୍ତ କାହିଁକି ?

ଡ଼:ଦାସ—(ଆବେଗରେ ଅସୀତାର ମୁଣ୍ଡରେ ସ୍ନେହରେ ହାତ ବୁଲାଇ ସୁଅ ମୁହଁରେ ତୁ ତ ନିଜେ ତଡ଼ି ହୋଇଯିବୁ ମା ! ତମେ ସବୁ ଆଗେଇ ଚାଲିବ ଏ ଯୁଗର ପିଲା··· Forward march— ଆମେ ସବୁ ପକ୍ୱ-କେଶ ସ୍ଥବିର; ପଛରୁ କରିବୁ ତମ ଜୟ-

ଯଂକାର ଗାନ ! ଅଜାଣ୍ଡ ଦେବୁ ଅଜସ୍ର ଆଶୀର୍ବାଦ ! ଏଇ ଯାହାଙ୍କ ତ ଜୀବନ ଯାହା ମା, ଉଦୟରୁ ଅସ୍ତଯାଏ ଏଇତ ତାର ଗତି ! ଗଛରେ ଫୁଲ ଫୁଟିବ—ଫଳ ଧରିବ—

ଅସୀତା - ଆଜଠୁଁ କଥାବାର୍ତ୍ତା ବନ୍ଦ···ମୁଁ ଚାଲିଲି । ଛି, ଛି !

ଡ଼:ଦାସ – ଟିକଏ ଆଗରୁ ଚାଲି ନ ଯିବାକୁ କହୁଥିଲୁ ନା ?

ଅସୀତା— କହୁଥିଲି ତ କହୁଥିଲି···ଯାଃ !

ଡ଼:ଦାସ—ବେଶ୍ ତ । ମୋର ପାଖରେ ସବୁଦିନେ ରହିବାକୁ ଯଦି ମନ, ତାହେଲେ ମତେଇ' ବାହା ହେଇପଡ଼ ! ମୁଁ ଆଜ ତତେବ ନାଇଁ କ ତୁ ବ ଘୁଡ଼ ମିବୁନାଇଁ ( ହସି ଉଠିଲେ )

ଅସୀତା—( ଗମ୍ଭୀର ହୋଇ ) ତୁମେ ମତେ ବାହାହବ···ନାଇଁ? ବୁଢ଼ା ହେଲଣି···ମୁଣ୍ଡ ଖରାପ ! ମାନେ, ବଦ୍ଧ-ପାଗଳ !

ଡ଼:ଦାସ—ମୋର ଏ ପାଗଳା ଅଜାକୁ ତୁ ଅଜ ତୋ'ର ହାତରେ ସନ୍ଦେଶ ଖୁଆଇବୁ ବୋଲିଲୁ ! ଚାଲ ···

ଅସୀତା—ହୋକ ·ବିରୁଦ୍ଧରେ ତୁମେ ପର ଅପମାନ କରୁଚ ! ତମର ପୁଣି ହୋକଶୋଷ କ'ଣ ? ନା, ଖିଆପିଆ ସବୁ ତମର ବନ୍ଦ ! ମତେ ଯାହା କଦର୍ଯ୍ୟ କଥା କହିଚ ନା, ମୁଁ ତାର ପ୍ରତିଶୋଧ ନ ନେଇ ଛାଡ଼ୁନ ! (ପ୍ରସ୍ଥାନ)

ଡ଼:ଦାସ —ପାଗଳି ମା ମୋର ! ( ହସି ହସି ବହି ପାଖକୁ ଗଲେ । ଏତିକ ବେଳେ ଗୋବନ୍ଦ ଆସିଲା )

ଗୋବନ୍ଦ – ବାବୁ !

ଡ଼:ଦାସ – କ'ଣ କ'ରେ ଗୋବନ୍ଦ ?

ଗୋବନ୍ଦ – ଅଜ କ'ଣ ବୁଲିଯିବ୍ନ ?

ଡ଼:ଦାସ – ନା, କାହିଁକ ?

ଗୋବନ୍ଦ - ଡ୍ରାଇଭର କହୁଚି ତା ଘରକୁ ଯିବାକୁ, ଯିବ ?···

ଡ଼:ଦାସ—ପିବା ?
ଗୋ.ବନ୍ଦ—ଯାଉ !
ଡ଼:ଦାସ—ବେଶ୍ ଯାଉ, (ଗୋବନ୍ଦ ଯାଉଥିଲା) ହଇରେ, ଗୋବନ୍ଦ ?
ଗୋବନ୍ଦ—କ'ଣ ବାବୁ ?—
ଡ଼:ଦାସ—ତତେ ତ ପଚୁଶ ଟପି ପିବଣି କ କ'ଣ ରେ ?
ଗୋବନ୍ଦ—ବଅସ କଏ ଗଣୁଚି ଆଜ୍ଞା; ପଚୁଶ ହେଲେ କେତେ ଷାଠିଏ ହେଲେ କେତେ ! ଯୋଉଦନ ଡକରା ଆସିବ, ଆଉ ବୁଢ଼ାବାବୁ କଏନା ଗୋବନ୍ଦା କଏ !
ଡ଼:ଦାସ—ମୋ ପାଖରେ ତୋ ଜମରଟା ବତିଗଲା; ହନେ କୋଉ କଥାଟା ତ ମୁହଁ ଖୋଲ ମାଗିଲୁ ନ ରେ ଗୋବନ୍ଦ ?
ଗୋବନ୍ଦ—ହିଁ ତମେ କେତେଥର କହିଲଣି, କ'ଣ ଗୋଟାଏ ମାଗିବ ମାଗିବ ବୋଲ୍ ମୋର ଆଉ ହେଜ ହୁଏ ନା ! ହ, ମାଗିବ ଆଉ କ'ଣ ସାଆନ୍ତେ ! ତେମେ ଯୁଗେ ଯୁଗେ ବସିଥାଅ, ମୁଁ ଜାଇଥିବା ତକ ତମ ସେବା କରୁଥାଏ ! (କୃତଜ୍ଞତାରେ ଆଖି ଛଳ ଛଳ ହୋଇ ଆସିଲା) ସ୍ଵାଠୁଁ ବଡ କଥା ଆଉ କ'ଣ ମାଗିବ କହିଲ ?
ଡ଼:ଦାସ—ତୁ ନ ମାଗିଲେ କ'ଣ ହେଲା, ମୁଁ ତତେ ନଶ୍ଚୟ ଦେବ ! ହୁଁ ନଶ୍ଚୟ ଦେବ ତତେ !
ଗୋବନ୍ଦ—କ'ଣ ବାବୁ ?...
ଡ଼:ଦାସ—ଦେଖିବୁ ରହ, ନେଲବେଳେ ଜାଣିବୁ । ଯେଉଥିପାଇଁ ବର୍ଷ ବର୍ଷ ଧରି ଲଗିଛ, ସେଥିରେ ମୁଁ ଯଦ ସଫଳ ହୁଏ, ତୁ ଆଗ ପାଇବୁ । ତୋଉ ଉପରେ ମୁଁ ମୋର ପ୍ରଥମ experiment କରିବ !
ଗୋବନ୍ଦ—କ'ଣ କରିବ ?

ଡ଼:ଦାସ—ତୁ ଯା ଗୋବନ୍ଦ, ତୁ ଯା' (ଗୋବନ୍ଦ ଚ୍ଛଲ ଯାଉଥିଲ) ଗୋବନ୍ଦ !

ଗୋବନ୍ଦ—ଆଜ୍ଞା ! (ଫେରିଛୁ)

ଡ଼:ଦାସ—ଟିଠି ଖଣ୍ଡକ କାଲି ପକେଇଛୁ ?

ଗୋବନ୍ଦ—ହେଇଟି ଦେଖିଲ, ଗୁଣ୍ଡାଳ, ମୋର କ'ଣ କିଛୁ ମନେ ରହୁଚ ! ଥାକ ଉପରେ ଥୋଇ ଦେଇଚ ଯେ ଗଲ୍ ଆଉ କ'ଣ ହୋସ୍ ଅଛୁ ! ମୋ ମନ ତ ବଇଷି ହେଲ୍ ସବୁଦନେ ବାବୁ ।

ଡ଼:ଦାସ—ହୁଁ, କିଛୁ ତ ତୋର ମନେ ରହୁନ୍, ତୁ ଆଉ ମଣିଷ ହବୁ କମିତ ?

ଗୋବନ୍ଦ—ହେଲେ... ସେଦ୍ଦନର କଥା ମୁଁ ଜମାରୁ ଭୁଲ ପାରବ ନ ବାବୁ !

ଡ଼:ଦାସ—କୋଉ ଦ୍ଦନ କଥା ?

ଗୋବନ୍ଦ—ତମେ ପୁଷ୍ପରେ ଥାଅ...ହଇଜା ବୋଲ ମୋ ଜାତଭାଇ ଛାଡ଼ ପଳେଇଲେ...ହେଲେ ତମେ ପର ଅପର ନ ଭାବ ମତେ ବଞ୍ଚେଇଲ, ତମର ପାଖରେ ରଖେଇଲ । ମା' ସରସ୍ୱତୀ ମତେ ସୁଦପ୍ପା କରିଥାନ୍ତୁ ବାବୁ, ସବୁ ପାଶୋରଯାଏଁ ପଛକେ ସେଦ୍ଦନ କଥା ମୁଁ ଯେମିତ ପାଶୋର ନ ଯାଏଁ ! ( ଆଖି ଛଳ ଛଳ କରି)

ଡ଼:ଦାସ—ହଉ, ଯା, ଯା, ଟିଠି ଖଣ୍ଡିକ ଏଇନେ ପକେଇ ଦବୁ ।

ଗୋବନ୍ଦ— ଯାଉଚ ! (ପ୍ରସ୍ଥାନ)

ଡ଼:ଦାସ—(ଟେବୁଲ ପାଖକୁ ଯାଇ ସେ ବହି ଖଣ୍ଡିକ ପଢ଼ୁ ପଢ଼ୁ ହାତରେ ନେଇ ତାଙ୍କ ଯନ୍ତ୍ରପାତି ପାଖକୁ ଫେରିଗଲେ । କିଛୁକ୍ଷଣ ପରେ ବାହାରୁଆସିଲେ ଅତନୁ । )

ଅତନୁ—ଅସୀତା ! ଅସୀତା···

ଅସୀତା—(ଫେରିଲେ) ହ୍ୟାଲୋ, ଅତନୁ ! ତୁମେ ଏକା ?

ଅତନୁ—ସାଗର ବୋଧହୁଏ ଠିକ୍ ସମୟରେ ଆସି ପହଞ୍ଚିବ । ତୁମେ ଆଗ ପ୍ରସ୍ତୁତ ହୋଇଯାଅ, ଆଜି ବେଶୀ ସମୟ ନାହିଁ । ( ହାତଘଣ୍ଟା ଦେଖି )

ଅସୀତା—ମୁଁ ସାଙ୍ଗେ ସାଙ୍ଗେ ଆସୁଛି (ଘର ଭିତରକୁ ଚାଲିଗଲେ)

ଅତନୁ—Hurry up, ଅସୀତା ! please—

ସାଗର—(ପ୍ରବେଶି) ମୁଁ ମନେ କରିଥିଲି ତମେ ହୁଏତ ବାହାରି ଯାଇଥିବ !

ଅତନୁ—ନା, ମୁଁ ତ ଏଇ ବର୍ତ୍ତମାନ ପହଞ୍ଚିଲି ।

ସାଗର—ଓଃ ! (ଚଉକିରେ ବସି ପଡ଼ିଲେ) ।

ଅତନୁ—ଡ଼କ୍ଟର ଦାସଙ୍କୁ ଦେଖିଚୁ ! ( ଝରକାବାଟେ ଦେଖାଇ ଦେଲେ ) ତୋର କ'ଣ ଧାରଣା ସାଗର ?·········

ସାଗର—ମାନେ ?—

ଅତନୁ—ଡକ୍ଟର ଦାସଙ୍କର ଏଇ ଗବେଷଣା ଉପରେ !

ସାଗର—ତୋର କ'ଣ ଧାରଣା ?

ଅତନୁ—ଭାରି ଚମତ୍କାର ହବ । ତୁ କ'ଣ ଭାବୁଚୁ ହବନି ?

ସାଗର—ନା, ନା, ସେ କଥା ନୁହେଁ । ମନେକର ଶେଷ ପର୍ଯ୍ୟନ୍ତ ଡକ୍ଟର ଦାସ କୃତକାର୍ଯ୍ୟ ହେଲେ···କିନ୍ତୁ ଶେଷ ଫଳ କ'ଣ ହବ ଅତନୁ ?

ଅତନୁ—ଭାଷାରେ ପ୍ରକାଶ କରିବାର ଶକ୍ତି ମୋର ନାହିଁ ସାଗର ! କିନ୍ତୁ ଏଇଟା ବୋଧହୁଏ ମନୁଷ୍ୟର ସର୍ବଶ୍ରେଷ୍ଠ ଆବିଷ୍କାର ହବ ।

ସାଗର—କିନ୍ତୁ···ମୋର କ'ଣ ମନେ ହଉଚି ଜାଣୁ !

ଅତନୁ—କ'ଣ ?

ସାଗର – ଡକ୍ଟର ଦାସ ବୃଥା ସମସ୍ତ ନଷ୍ଟ କରୁଛନ୍ତି । ମୁଁ ସ୍ପଷ୍ଟ ଦେଖୁଚି···ତାଙ୍କର ଏଇ ଦୀର୍ଘଦିନର ସାଧନା ଏକ ବିରାଟ ଭଗ୍ନ ସ୍ତୂପରେ ପରିଣତ ହେବ !

ଡ଼: ଦାସ—(ଭିତରୁ) କିଏ, କିଏ କହୁଚି ଏ କଥା ? ( ଆସିଲେ )

ସାଗର—ମୋର ଯାହା ଧାରଣା ସାର୍ !

ଡ: ଦାସ—ତମର ଏ କଥାରେ ମୁଁ ଆଦୌ ଦୁଃଖିତ ନୁହେଁ ସାଗର । ଯେହେତୁ ତୁମର ବ୍ୟକ୍ତିଗତ ଅନୁମାନ ବା ଧାରଣା ଉପରେ ହସ୍ତକ୍ଷେପ କରିବାର ଅଧିକାର ମୋର ନାହିଁ; ମାତ୍ର ବୈଜ୍ଞାନିକ ହିସାବରେ ମୋର ଭରସା ଅଛି, ମୁଁ ଜୟଯୁକ୍ତ ହେବ, ନିଶ୍ଚୟ ହେବ ! ବସ, ତୁମେ ବି ବସ—

ସାଗର – ଆପଣ କଣ ମନେ କରୁଛନ୍ତି ସାର୍, ଦାରିଦ୍ର୍ୟ ପୃଥିବୀରୁ ଏକାବେଳକେ ଲୋପ ପାଇଯିବ ?

ଡ଼: ଦାସ—ଦାରିଦ୍ର୍ୟର ମୂଳପିଣ୍ଡିଟିକୁ ନଷ୍ଟ କରିଦେଲେ 'ଦାରିଦ୍ର୍ୟ' ବୋଲି ଗୋଟିଏ ଶବ୍ଦ ଅଭିଧାନରେ ରହିବାର ଆବଶ୍ୟକତା ଆଉ ରହିବନି ସାଗର ! କ୍ଷୁଧା ଯଦି ପୃଥିବୀରେ ନ ରହେ, ଖାଦ୍ୟ ପାଇଁ ମନୁଷ୍ୟର ଅନ୍ୱେଷଣ ଆଉ ରହିବ ନାହିଁ ! ଅସତ୍ ମାର୍ଗ ଅନୁସରଣରୁ ସେ ଅନ୍ତତଃ ନିବୃତ୍ତ ହବ ! ଶାନ୍ତିର ପ୍ରତିଷ୍ଠା ଯଦି ସମ୍ଭବ ହୁଏ, ଦାରିଦ୍ର୍ୟର ଅବଶେଷ ପୃଥିବୀରୁ ନିଶ୍ଚୟ ଲୋପ ପାଇବ !

ଅତନୁ—ମୁଁ ଆପଣଙ୍କ ଏଇ ଅଭିନବ ଉଦ୍ୟମକୁ ସ୍ୱାଗତ ନୁହେଁ, ଅଭିନନ୍ଦିତ କରୁଛି ସାର୍ !

ଡ଼: ଦାସ—ତୁମେ ବିହେଁ ପିଲା···ଜୀବନ ସହିତ ତମର ପରିଚୟ ଅତି ଅଳ୍ପ ଦିନର ! ଜାଣିନା ତୁମେ ସାଗର, କି ସଂଗ୍ରାମ ଭିତରେ

ଅହର୍ନିଶି ମନୁଷ୍ୟ ଗତି କରି ଚାଲିଛି ! କେତେ ତା'ର ବିଫଳତା; କେତେ ତା'ର ହାହାକାର !···

ସାଗର—କିନ୍ତୁ ସେଇ ବିଫଳତା ଭିତରେ ଜୀବନର ସତ୍ୟତାର ଆନନ୍ଦ ପୂର୍ଣ ରହିଛି ସାର୍ !

ଡ଼. ଦାସ—( ହସି ଉଡ଼େଇ ଦେବାକୁ ଚେଷ୍ଟା କଲେ ) ଅପେକ୍ଷା କର ସାଗର ! ଦେଖିବ ତୁମେ, କ'ଣ ହେଇଯିବ ଏ ପୃଥିବୀର ରୂପ ! ( ଆଗାମୀ ଭବିଷ୍ୟତର ଏକ ମଧୁର ପ୍ରତିଛବି ଯେମିତି ତାଙ୍କ ଆଖି ଆଗରେ ନାଚି ଉଠିଲା ) ବିସ୍ମୟ-ବିସ୍ଫାରିତ ନୟନରେ ସାରା ପୃଥିବୀ ଦେଖିବ, ସମଗ୍ର ମନୁଷ୍ୟ ଜାତି ପ୍ରତି ଜଣେ ବୈଜ୍ଞାନିକର କି ଅପୂର୍ବ ଦାନ ! ହା···ହା···ହା···

(ଚାଲିଗଲେ)

ଅତନୁ—ଏଇଟା କିନ୍ତୁ ତୋର ଅନ୍ୟାୟ ସାଗର ! ଡକ୍ଟର ଦାସ ହୁଏତ ଆଘାତ ପାଇଲେ ! ତାଙ୍କର ଏତେ ବଡ଼ ସାଧନାକୁ ତୁ ପଦେ କଥାରେ ଉଡ଼େଇଦେବାକୁ ବସିଚୁ !

ସାଗର—ଦେଖ ଭାଇ, ଆଘାତ ଦେବା ଉଦ୍ଦେଶ୍ୟରେ ମୁଁ କହୁନାହିଁ ! ପ୍ରକୃତ କର୍ମୀ ଯିଏ, ସେ ବରଂ ଏଇ କଥାରେ ଆହୁରି ଶତଗୁଣ ଉତ୍ସାହରେ ଆଗେଇ ଚାଲିବ ! ଆଚ୍ଛା ଅତନୁ Dr. Das କ୍ଷୁଧାକୁ ଦୂର କରିବା ଲାଗି ଚେଷ୍ଟା କରୁଚନ୍ତି; କିନ୍ତୁ ପ୍ରକାରାନ୍ତରେ କ୍ଷୁଧାକୁ ଦୂର କରିବା ଲାଗି ତାଙ୍କର ଇଏ କ'ଣ ଏକ ମହାନ୍ କ୍ଷୁଧା ନୁହେଁ ? କ୍ଷୁଧା ରହିବ ହିଁ ରହିବ, ତାହା ଯେ ଯେ କୌଣସି ରୂପରେ ହେଉ ! ମୋର ଯାହା ଧାରଣା···( ଅସୀତା ଆସି ସାଗର ପିଠିରେ ହାତ ଦେଇଛି )

ଅସୀତା—ଆଉ, ବର୍ତ୍ତମାନ ପାଇଁ ଆଲୋଚନା ବନ୍ଦ ଥାଉ, ଆସ, ଅତନୁ—

ଅତନୁ—ଚାଲ, ସାଗର ! ଚାଲ···

ସାଗର—ତମେ ଦୁହେଁ ଯାଅ, ମୁଁ ବରଂ···

ଅତନୁ—ବରଂ ପରଂ କିଛି ନୁହେଁ, ଆ—

ଅସୀତା—ତିନୋଟା ଟିକେଟ୍ ମୁଁ ମଗେଇ ନେଇଚି ! ସ୍କ୍ରୀନ ଉପରେ ଆଉ କୌଣସି ପ୍ରତିବାଦ ଚଳେ ନା···ଆସ ସାଗର । ( ହାତଧରି ଉଡ଼ି ନେଇଗଲା, ସେମାନେ ଚାଲିଗଲେ । ଗୋବିନ୍ଦ ଧୀରେ ଧୀରେ କକ୍ଷ ମଧ୍ୟରେ ପ୍ରବେଶ କଲା)

ଗୋବିନ୍ଦ—ବାବୁ ! ବାବୁ !

ଡ଼: ଦାସ—(ଭିତରୁ) ଗୋବିନ୍ଦ, କଣ ଦରକାର ?

ଗୋବିନ୍ଦ—ବାବୁ, ମୋ କଥା ଟିକିଏ ଶୁଣିବ ?

ଡ଼: ଦାସ—( ଆସିକରି ) ଓଃ, ବଡ଼ disturb କରୁଚୁ ତୁ ! କଥା କ'ଣ ?—

ଗୋବିନ୍ଦ—ଆଖିକି ଆଉ ଭଲ ଦିଶୁନି ବାବୁ !

ଡ଼: ଦାସ—ଅର୍ଥାତ୍ ?···କ'ଣ ତୁ କହୁଚୁ ?

ଗୋବିନ୍ଦ—ଏଇ ମିଳାମିଶା ··ଆମ ଦେଈଙ୍କ ସାଙ୍ଗରେ ଅତନୁବାବୁ ଆଉ ସାଗରବାବୁଙ୍କ ମିଳାମିଶା···

ଡ଼: ଦାସ—କଥାଟା ଇମିତି ବେଖାପ୍ କରି ଆରମ୍ଭ କରିବ ଯେ···

ଗୋବିନ୍ଦ—(ନୀରବ)

ଡ଼: ଦାସ—ଆରେ ଗୋବିନ୍ଦ, ଏଇ ତିନୋଟିଙ୍କୁ ଏକାଠି ଦେଖିଲେ ଖୁସିରେ ମୋ ଛାତି କୁଣ୍ଡେ ମୋଟ ହେଇଯାଏ ! ଦେଖୁଚୁନି, କି ସରଳ ବନ୍ଧୁତା ! ହା···ହାଁ···ହା···

ଗୋବନ୍ଦ—ହେଲେ, ନାଚୁଣୀ ଜୋଉଁ ତ ଦୋ'ଟି ହେବ ନାହିଁ ବାବୁ, ଗୋଟିକ ସାଙ୍ଗରେ ବାହାଘର କରିଦିଅ !

ଡ଼: ଦାସ—ଏଁ, ବାହାଘର ! ( ଟିକଏ ନୀରବତା ପରେ ) ସେ'ତ ଗୋଟିଏ ସମସ୍ୟା, ଗୋବନ୍ଦ ! ଭାବବାର କଥା—

ଗୋବନ୍ଦ—ତମେ ଭାବବାକ ତ ଭାବବ ଆଉ କଏ ? ଅସୀତା ମା'ର ଆଉ କଏ ଅଛି ?

ଡ଼: ଦାସ—ହେଲେ, କାହା ହାତରେ ମୁଁ ଅସୀତାକୁ ଦେବ ? ନକଟ ତ ବବାହର ସମାନ ରହୁନ ଗୋବନ୍ଦ, ମୁଁ ତ କଛ ସ୍ଥିର କର ପାରୁନ । ଆଚ୍ଛା, ତୁ ଗୋଟାଏ କାମ କର; ଡ୍ରାଇଭରକୁ କହ, ସେ ଗାଡ଼ ବାହାର କରୁ ।

ଗୋବନ୍ଦ—ତାକୁ ଆଜ ଛୁଟି ଦେଲ ପରା !

ଡ଼: ଦାସ—ଛୁଟି ଦେଲ ! ଓ, ସେ ଚାଲଯାଇଚ ନା ? ଠିକ୍ କଥା ତ ! ଆଚ୍ଛା, ତୁ ଯା—ମୁଁ ଭାବଚନ୍ତ ଠିକ୍ କରବ, ତୁ ଯା, ବାହାଘର, ହୁଁ !··· ( ଭତରକୁ ଚାଲଗଲେ )

—ପରଦା—

## —ଦ୍ୱିତୀୟ ଦୃଶ୍ୟ—

ରାଜପଥ

[ସମୟ ଅପରାହ୍ଣ । କଥାବାର୍ତ୍ତା କରୁ କରୁ ଆସିଲେ ଶଙ୍କର ବାବୁ ଓ ସନ୍ତୋଷ । ଶଙ୍କରବାବୁ ପ୍ରୌଢ଼, ସନ୍ତୋଷ ଯୁବକ । ସନ୍ତୋଷର ବେଶଭୂଷାରେ ବୃଥା ଆଡ଼ମ୍ବରର ପରିପାଟୀ ରହିଛି ]

ଶଙ୍କର—ବୁଝିଲ ସନ୍ତୋଷ ବାବୁ, ବାହାଘର ବାହାଘର ବୋଲି ଆଖିକି ନିଦ ନ ଥାଏ, ଝଡ଼ ବର୍ଷା ରାତିରେ ଝରକା ମେଲିକରି ବାହାରକୁ ଅନେଇଥାଏ ଯେ ଟୁପୁଟୁପୁ ପାଣି ଛିଟିକା ଦେହ ମୁଣ୍ଡରେ ପଡି ମନଟାକୁ ବିଲକୁଲ ଓଦା କରି ପକଉଥାଏ । ଘଡ଼ଘଡ଼ିଟାଏ ମାରିଦେଲା ବେଳକୁ ଛାତି ଭିତରଟା ଖାଲି ଦୁରୁ-ଦୁରୁ ହୋଇ କମ୍ପି ଯାଉଥାଏ...ଆଃ, ସେକଥା ଆଉ କ'ଣ କହିବି ସନ୍ତୋଷ ବାବୁ !

ସନ୍ତୋଷ—ଆଚ୍ଛା, ଶଙ୍କର ବାବୁ ! ଏଇନେ ଆପଣଙ୍କର ପିଲାପିଲି କେତୋଟି ?...

ଶଙ୍କର - କହିନାହିଁ ସନ୍ତୋଷବାବୁ, ଏଇ ବାସଠି ସାଲ ମାର୍ଚ୍ଚ ସୁଦ୍ଧା ଗୃହିଣୀଙ୍କର ଅଧ ଡ଼ଜନେ ଝିଅ ଆଉ ସଉଆ ଡ଼ଜନେ ପୁଅ ! ଗୋଟିଏ ପଛକୁ ଆଉ ଗୋଟିଏ ଲାଗିଛନ୍ତି—ଆଃ !

ସନ୍ତୋଷ—ନଅଟି ପିଲା ?...( ବିସ୍ମିତେ )

ଶଙ୍କର—ସେଥିରେ ଗୃହିଣୀ ଯେମିତି ଚମ୍ପା ସାପ । ଏତେଗୁଡ଼ିଏ ଜନ୍ମ ଦେଇ ମଧ୍ୟ ଚିନ୍ତାଶୂନ୍ୟା, ବନ୍ଧକ-ବର୍ଜିତା ! Birth con-torlର ଆଶ୍ରୟ ନ ନେବାକୁ ଏକାବେଳେକେ ଆଡ଼ାମେଣ୍ଟ୍ ।

ସତୀଶ—ଆପଣଙ୍କ ଘରେ ଦେଖୁଚି Sri, ବଡ଼ tragedy !

ଶଙ୍କର—ଟ୍ରେଜେଡ଼ି କୁହନ୍ତି ସତୀଶ ବାବୁ, ଘଡ଼ଘଡ଼ି, ଚଡ଼ଚଡ଼ି, ଗଧାଚଢ଼କ । ଆଜି ପିଲାଗୁଡ଼ାଙ୍କୁ ବି ଦେଖିବ, ମାତୃଗୁଣେ କି ମାମଲତକାର ! ପରୀକ୍ଷାରେ ତିନି ତିନି ଥର ଫେଲ୍ କରି କାହାରି ସଦଗତି ନାହିଁ, ଆଉ କଏ ବା କୌଣସି ପ୍ରକାରେ ଚଢ଼ାମୁଢ଼ି ଗଣ୍ଡାଏ ବଖତ ବେଳକୁ ପାଇଲେ ହେଲା । ମୋଟ ଉପରେ ସେ ଚଢ଼ଆଖାନାରେ ସବୁବେଳେ କଳରବ··· କୋଳାହଳ; ଶାନ୍ତିରେ ଅଫିସ କାମ ଟିକିଏ କରିବ, ସେ ଉପାୟ ଆଉ ନାହିଁ । ଜୀବନ ଉପରେ ଅରୁଚି ଆସିଗଲାଣି ସତୀଶବାବୁ ! କାତ, ଆହୁଲା, ଯେତେ ପାହା ମାରିଲେ ବି ଦଦରା-ଡଙ୍ଗା ଏକାବେଳେକେ ଅଚଳ !

ସତୀଶ—ଇମିତିଆ କଥା ସବୁ ଶୁଣି ଶୁଣି ବିବାହ ଉପରୁ ଆସ୍ଥା ତୁଟି ଗଲାଣି ଆଜ୍ଞା !

ଶଙ୍କର—ଠିକ୍ କଥା ମନେ ପକେଇଲ । ହଇହୋ ସତୀଶବାବୁ, ତମ ବାହାଘର କଥା ପୁଣି କ'ଣ ହେଲା ?

ସତୀଶ—ଡ଼କ୍ଟର ଦାସଙ୍କ ସେଇ ଯୋଉ ନାତୁଣୀଟି ଏଇବାଟେ ଅନେକ ସମୟରେ କାର୍ ନେଇଯାଏ, ଆପଣ ଦେଖିଥିବେ ତ—

ଶଙ୍କର—ହିଁ, କ'ଣ ହେଲା ? ସତେ ନା !

ସତୀଶ—(ହସି) ନା, ମୁଁ ଆଗ—

ଶଙ୍କର—ଆଉ ଆଗ ନାହିଁ କି ପଛ ନାହିଁ ! ହଇହୋ, ତୁମେ ସତୁରି ଟଙ୍କାର ଟାଇପିଷ୍ଟ ହୋଇ ସତୁରି ହଜାର ଟଙ୍କାର କାର୍ ଭିତରକୁ ଅନେଇଚ ! ସାବାସ୍ ! କହହୋ, ତମର ପରା ପୀତବାସ ବାବୁଙ୍କ ଘରେ ସମ୍ବନ୍ଧ ଚାଲିଚି ନା କଣ ?

ସତୀଶ - ନାଇଁ ଆଜ୍ଞା, କୋଉଠି କଣ୍ଟ୍ରୁ ସ୍ଥିର ହେଉନି । Choice ମୁତାବକ ନ ହେଲେ—

ଶଙ୍କର—ଆହା ସତୀଶବାବୁ, ମୋ କଥା ମନେ ରଖ । ତୁମ choiceଟାକୁ ଏକଦମ୍ ଲାଟାମଞ୍ଜଡ଼ା କରି ଦିଅ ନା । ନ ହେଲେ ଗୋଡ଼ ହାତ ଘଣ୍ଟି ଚୁଟ୍ଟା ହୋଇ ବସିବ । ହଁ, ଦରମା ଆଜି ପାଇଲ ?

ସତୀଶ—ହଁ ! ଟିକଏ ସିନେମା ଯିବି ବୋଲି ବାହାରିଚି, ଆସନ୍ତୁ ଯିବା ?

ଶଙ୍କର—ସିନେମା ହୁଏ ବୋଲି ଜାଣିଚି, ହେଲେ ଯିବାର ସୁବିଧା ନାହିଁ । ଟଙ୍କାର ହିସାବ ତ ଦାଣ୍ଡରେ ଥୁଆ । ଦରମା ମିଳିଚି ବୋଲି ସିନେମା ଦେଖିଲେ ପରିବାରଟି ଆଉ ରହିବ ! ଅନଶନରେ ସମସ୍ତଙ୍କର ଅକାଳ-ମୃତ୍ୟୁ ହୋଇଯିବ !

ସତୀଶ—ଆସନ୍ତୁ, ମୁଁ ନେଇଯିବି—

ଶଙ୍କର—ନାଇଁ ତୁମେ ଯାଅ । ବୁଝିଲ ବାବୁ, ସବୁବେଳେ ହୁସିଆର ହୋଇ ଚଳ···ଅଫିକୁ ଗୁହାଁ ! ( ପିଲାଟିଏ ଏତିକିବେଳେ ଖବର କାଗଜ ଧରି ଡାକି ଡାକି ଆସିଲା—'ଶୁଭ ସମ୍ବାଦ' 'ଦୈନିକ ଶୁଭ ସମ୍ବାଦ' ଗୁଲା ଯାଉଥିଲା ଟସ )

ସତୀଶ—ଏ ପିଲା, କାଗଜ ଖଣ୍ଡେ ଦେଇ ଯା—

ଶଙ୍କର—ରକ୍ଷା ହେଇଚି, ଖବର କାଗଜ ତୁମେ ତା'ହେଲେ ପଢ଼ !

ସତୀଶ—ପଢ଼େ ମାନେ—ସେଷଆଡ଼ୁ ଆରେ, ଅର୍ଥାତ୍ Wanted Column, ଚାକିରି କୋଉଠି ଖାଲି । ତା'ପରେ ସିନେମା ପେଜ୍··ସେଇଠୁ ନାଚକୁଦର ଇତିହାସ—ତା'ପରେ ଖେଳ—

ଆଉ ଶେଷରେ ରାଶିଫଳ । ଏଇ ସମସ୍ତ ଶୁଭ ସମ୍ବାଦ ! ( **ହସି** ହସି )

( ଇତିମଧ୍ୟରେ ପିଲାଟି ପଇସା ପାଇଁ ବ୍ୟସ୍ତ ହେଲାଣି )

ପିଲା – ସାର୍ ! ପଇସାଟା ଆଗେ ଦେଇ ଦିଅନ୍ତୁ, ମୁଁ ଯାଏ—

ସନ୍ତୋଷ - ଆରେ ତୁ ନ ଗଲେ କ'ଣ ଦୁନିଆଟା ପଳେଇ ଯାଉଛି ।
ହଇରେ, ତୁ ତ ଖୁବ୍ ଭଦ୍ରଘରର ପିଲା ପରି ଦେଖା ଯାଉଚୁ ।

ପିଲା—(ଟିକିଏ ହସି) ଖାଲି ଅଭଦ୍ରମାନେ କ'ଣ ଖବର କାଗଜ ବିକ୍ରୀ କରନ୍ତି ସାର୍ ! ଆପଣଙ୍କର କ'ଣ ଧାରଣା – ?

ସନ୍ତୋଷ – ନା, ମୋ କହିବା କଥା, ତୁ ଯଦି ଭଦ୍ରଘରର ପିଲା, ଆଉ କିଛି ନ କରି ଏଇ ସାମାନ୍ୟ କାଗଜ ବିକ୍ରୀ କରି ଚଳିବା—

ପିଲା—ଦେଖନ୍ତୁ ସାର୍, ମୁଁ ଚୋରି କରୁ ନା କି ଭିକ ମାଗୁ ନା ! ପରିଶ୍ରମ କରି ଦି'ପଇସା କମଉଚି; ଏଇଟା କ'ଣ ଖରାପ କଥା ?

ଶଙ୍କର—ବାଃ, ପିଲାଟି ତ ବେଶ୍ interesting !

ପିଲା—ମୁଁ interesting ନୁହେଁ ସାର୍ ! ମୋ ଇତିହାସଟା ହଉଚି interesting ! ଆପଣଙ୍କ ଭଳି ଜଣେ ଭଦ୍ରଲୋକ (ସନ୍ତୋଷ ପ୍ରତି) ମତେ ୩୦।୪୦ଟି ଟଙ୍କା ଦେଲେ ମୁଁ ମୋର ପରୀକ୍ଷା ଫିସ୍ ଦାଖଲ କରନ୍ତି !

ସନ୍ତୋଷ—ମାନେ ?—

ପିଲା – କିଛି ନୁହେଁ ସାର୍ ! ମୋ ଅଣାଏ ପଇସା ମତେ ଦିଅନ୍ତୁ, ମୁଁ ଯାଏ—

ସନ୍ତୋଷ – ନେ, ନେ···( ପଇସା ଦେଲେ, ପିଲାଟି ଚାଲିଗଲା )
ଦେଖିଲେ ଶଙ୍କର ବାବୁ ! (ଅଭିମାନରେ) କ'ଣ ବା ମୁଁ ତାକୁ କହିଲି—

ଶଙ୍କର—ଦେଖିଲ ସନ୍ତୋଷ ବାବୁ, ସ୍ପେ ଗୋଟିଏ ନାଚେବଛା । ସବୁ ଗାଇ ବଞ୍ଚି ରହେ, ଆମ ଜାତିର ସେ 'ଜଣେ' ହବ ! ଆଚ୍ଛା ବାବୁ ! ଖବରକାଗଜ ପଢୁଚ—Wanted Column ଦେଖ କାଇଁକି ?

ସନ୍ତୋଷ – Better fortune – ସବୁ ତ ଲୁନସ ଆଜ୍ଞା ! ତା' ଛଡ଼ା ସିନେମା ପେଜ୍ ବା ଖେଳ ଖବର ନ ରଖିଲେ interviewରେ ଅସୁବିଧା ହୋଇପାରେ ।

ଶଙ୍କର— Current topic କିଛି ପଢ଼ ?

ସନ୍ତୋଷ—ହଁ' ତିନୋଟା କଥା ଜାଣେ, ବାସ୍ ଯଥେଷ୍ଟ ! ପାଞ୍ଚଟା କଥା—ଅଣୁ-ପରମାଣୁ, ଯୋଜନା, ଶାନ୍ତି, ନାଗରିକତା ଓ ଆନ୍ତର୍ଜାତିକତା ! ଏଇ ହେଲା ମୋ ମତରେ ପଞ୍ଚଶୀଳ !

ଶଙ୍କର—ମନ୍ଦ ନୁହେଁ, ବୁଦ୍ଧି ତୁମର ଅଛି ଦେଖୁଚି । କିନ୍ତୁ ବାବୁ, ଆପଣଙ୍କୁ ଚାକିରି ବ୍ୟସ୍ତ କର, ନ ହେଲେ ସିନେମା, ଖେଳ, ରାଶିଫଳ କେହି ତୁମକୁ ମନୋନୀତ କରିବେ ନାହିଁ । ହଉ ଯାଅ । ( ସନ୍ତୋଷ ନମସ୍କାର କରି ଚାଲିଗଲା । ଏତିକିବେଳେ ଜଣେ ବୈଷ୍ଣବ ଗୀତ ଗାଇ ଚାଲିଗଲେ ସେଇ ବାଟରେ । )

## —ବୈଷ୍ଣବର ଗୀତ—

ପାଦ ତଳେ ତୋର ଆଶା ନେଲା ଯେ
ତା ପାଇଁ ଦାରୁଣ ବ୍ୟଥା
ତଡ଼ିବାହା, ଇଏ କି ଅବୁଝା କଥା !
ହାତେ ମାପି ଯିଏ ଚାଲିଲା ଚାଖଣ୍ଡେ,
ଦୁନିଆ ଚଢ଼ିଲା ଯାଉ ତାର ମୁଣ୍ଡେ,
ହାତ ସଫେଇରେ ଗୁରୁଦେବ ଯିଏ—

ଉଡ଼ି ଯାଏ ଷୀର ଖଣ୍ଡେ !
ଚଉବାହା··· ।୧।
ଘଇ ବୁଟକ ଛୁଗ ଚଳା କଉଶକ—
କଳାରେ ଯେ ଜନ ହେଲ ହେ କୁଶଳ !
ପଳଟେ ତା' ପାଇଁ ସଂସାର ସୋହାଗ—
ସବୁ ଯେ ହୁଅଇ ଠୂଳ !
ଚଉବାହା··· ।୨।
ଆପଣା ବଡ଼ଉଇ ଆପେ ହୋଇ ବକ
ସଜ ଖଞ୍ଜି ଯିଏ ଆନେ ପାଟରେ ଠକ
ସବୁଠେଇଁ ତା'ର ନମିତା ପଡ଼ଇ—
କହିବାକୁ ଭଲ ଲୋକ !
ଚଉବାହା··· ।୩।
ଅତ ବଣୁଆସେ ସେବକ ଉଦ୍ଧବ,
ପାଦ ତଳେ ଯୋର ନ ମିଳନ୍ତି ଠାବ;
ଶିରେ ହେଲ ତା'ର ଚନ୍ଦନ-ପାଦୁକା
ପରାକ୍ରମ ହେଲ ଲଭ !
ଚଉବାହା ·· ।୪।

( ବୈଷ୍ଣବର ପ୍ରସ୍ଥାନ )

ଶଙ୍କର—ଠିକ୍ କଥା, ଠାକୁରଙ୍କ କରଣୀ ଆଉ କାଟିବ ନାଇଁ । ବଡ଼ ଦେଉଳ ରହିଥିବ ହେଲେ ମଣିଷ ଆଉ ରହିବେ ନାଇଁ । (ଦୀର୍ଘ ନିଶ୍ବାସ ପକାଇ ଯାଉଥିଲା ବେଳେ ପୀତବାସ ବାବୁ ଦେଖି ଆସୁଥିଲେ) କିଏ ପୀତବାସ ବାବୁ···ନା ?

ପୀତ—ଆରେ, କିଏ ଶଙ୍କରବାବୁ ! ଏଠି ଠିଆ ହୋଇଚ କାଇଁକି ?

ଶଙ୍କର—ନାଇଁ, ଏଇ ବିଷ୍ଣୁବଟିର ଗୀତ ଶୁଣି ଶୁଣି ଟିକଏ ଛୁଡ଼ା ହୋଇ ଯାଇଥିଲି । କ'ଣ ସତରେ ହେଲା ଅଜ୍ଞା, କାଳ କ'ଣ ହେଲା ? ଟଙ୍କାରେ ପାଞ୍ଚପା ଗୋଡ଼ ମିଶା ଗୁଡ଼ଜଳ, ଖାଇଲେ ବେମାର, ନ ଖାଇଲେ ମଲା । ପିଲାଛୁଆଙ୍କୁ ନେଇ କେମିତି ଚଳିବା...

ପୀତ—ଆଉ ଚଳିବାର ପ୍ରଶ୍ନ ଉଠୁନି ଶଙ୍କର ବାବୁ, ବର୍ତ୍ତମାନ ଅଚଳ ଅବସ୍ଥା ।

ଶଙ୍କର—ଏଇ ଦେଖନ୍ତୁ, କେତେ ବା ଦରମା ପାଇଲି । ଘରେ ତହସିଲ୍ଦାରଣି କେତେ ମହାଜନ ଅନେଇ ବସିଥିବେ । ସାତ, ଆଠ ତାରିଖଯାଏ ଠେଲାପେଲା କରି ଚଳିବା କଥା, ସେଇଠୁ ଧାର, ଉଧାର, ଚଂଠା କାରବାର ଚାଲିବ । ହଁ, ଆପଣଙ୍କ ଖବର କଣ ? ସବୁ ଭଲ ତ ?

ପୀତ—ଭଲ ମନ୍ଦ ଆମର କ'ଣ ଶଙ୍କର ବାବୁ ? କାଲି ପୁଅର ପରୀକ୍ଷା ଫିସ୍ ଦାଖଲ ହବ । ପିଲାଟା ଭଲ ପଢ଼ିଚି । ତାକୁ ଟିକଏ ଅଣ୍ଡେଇ ନ ଦେଲେ...

ଶଙ୍କର—ଆପଣଙ୍କ ପୁଅ କ'ଣ ମାଟ୍ରିକ ଦବ ଏଥର ?

ପୀତ—ହଁ, ଶଙ୍କର ବାବୁ, ମୋ ଭଳିଆ ହତଭାଗା ବାପର ପୁଅ ହୋଇ ତାର ଜନ୍ମ ଏକ ଅଭିଶାପ; ନ ହେଲେ ପାଠ ପଢ଼ୁଆ ପିଲା ଖବରକାଗଜ ବିକି ପଇସା ରୋଜଗାର କରନ୍ତା ! ଭାଗ୍ୟ, ଭାଗ୍ୟ !

ଶଙ୍କର—କ'ଣ କହିଲେ ? ଓ, ସେଇ ପିଲା । ଠିକ୍—ସେଇପା ମୁଁ ଠିକ ଅନୁମାନ କରୁଥିଲି । ହଁ, ସେଇତ ଆପଣଙ୍କ ପୁଅ । ଯେମିତି ବାପକୁ ସେମିତି ପୁଅ ।

ଗୀତ—କାହିଁକି, କ'ଣ ହେଲା ? (ବ୍ୟସ୍ତ ଭାବରେ)

ଶଙ୍କର—ଟିକିଏ ଆଗରୁ ସେ କାଗଜ ନେଇ ଗଲା ଏଇ ବାଟରେ । ବାଃ, ପିଲାଟିଏ ହେଲେ କ'ଣ ହେଲା, ଆପଣା ଗୋଡରେ ଛିଡ଼ା ହବା'ର ଗୌରବ-ବୋଧ ତାର ଅଛି । ଭାରି ସାହସ ତାର ! ବା'ଃ !

ଗୀତ—ଶଙ୍କର ବାବୁ ! ମୋର ଜୀବନ-ସଂଗ୍ରାମରେ ଏତେ ପିଲାଟି ହେଲେ ବି ମୋତେ ସାହାଯ୍ୟ କରିବ ବୋଲି ମୁଁ ବିଶ୍ୱାସ କରି ନ ଥିଲି । ସେଇଟା ମୋ ଅପାରଗ ପଣିଆ, ଶଙ୍କର ବାବୁ ! ହୁଏତ ମୋ ଭାଗ୍ୟ ।

ଶଙ୍କର—ହେଲେ ଆପଣ ଦେଖିବେ ଆଜ୍ଞା, ହୁଏତ ସେଇ ପିଲାଟି ଦିନେ ଆମ ମଧ୍ୟବିତ୍ତ ପରିବାରର ଏକ ଉଜ୍ଜ୍ୱଳମଣି ହୋଇ ବିଶ୍ୱ-ଗଠନ ଦିଗରେ ପଥ ପ୍ରଦର୍ଶକ ହବ ! ତାର କୋଷ୍ଠି-ଗୁଡ଼ିଏ ଭଲ ଲକ୍ଷଣ ଅଛି ।

ଗୀତ—ପ୍ରଭୁ ତାକୁ ପରମାୟୁ ଦିଅନ୍ତୁ ଶଙ୍କର ବାବୁ ! ଗରିବ ବାପର ଦୁଃଖୀ ପିଲାକୁ ଘୃଣା ଛଡ଼ା ଆଉ ଦବାକୁ କିଛି ନାହିଁ । ଅଜି ଦରମା ଟଙ୍କାକ ମିଳିଗଲା । ଯାହାହେଉ, କାଲି ତା'ର ପରୀକ୍ଷା ଫିସ୍‌ଟା ଦାଖଲ ହୋଇଯିବ ।

ଶଙ୍କର—ବଜାରରୁ କ'ଣ ସବୁ ଆଣିଲେ ?

ଗୀତ—ପରିବାପତ୍ର କିଛି ନଉଚି—ଏ ଖଣ୍ଡିକ କପଡ଼ା—ଝିଅ ସକାଶେ ନଉଚି । ଆମେ ସିନା ଯେମିତି ସେମିତି ଚଳିପିବା, ହେଲେ ମାଇକିନିଆ ଝିଅ—ତାର ତ ଖଣ୍ଡେ ନ ହେଲେ ନୁହେଁ; ଖରଚ ବାରଚ କରି ଏଇ ଷାଠିଏଟି ଟଙ୍କା ବଳିଲା । ବିନୁ ପରୀକ୍ଷା ଫିସ୍—( ମାଝ ପକେଟ୍‌ରେ ହାତ ପୂରାଇଲା

ବେଳକୁ ଯେମିତ ବଜ୍ରପାତ ହେଲା ତାଙ୍କ ଉପରେ ! 'ଟଙ୍କା ନାହିଁ' । )

ଏଁ, ଟଙ୍କା କୁଆଡେ ଗଲା ଶଙ୍କର ବାବୁ !

ଶଙ୍କର—କ'ଣ ହେଲା ଆଜ୍ଞା ?

ପୀତ—କ'ଣ ଆଉ କହିବି ଶଙ୍କର ବାବୁ, ଟଙ୍କା ନାହିଁ । ବଜାର ବାଟେ ଲୋକ ଗହଳରେ ଆସିଲି । ଦେଖିଲ ଶଙ୍କର ବାବୁ, ମଣିଷର ପାଞ୍ଚ କମିତ ଅଲଣା ହୋଇଯାଏ···ଦେଖିଲ ଭାଗ୍ୟର କି ବିଡମ୍ବନା ! ( ବ୍ୟସ୍ତ ଭାବରେ ଖୋଜି ହଉଥିଲେ ) ଗଲା, ପକେଟରୁ କିଏ ନେଇଗଲା, ଶଙ୍କର ବାବୁ, ଉଃ ! ମୋର ତଣ୍ଟିରେ ଛୁରି ଦେଲା···( ସାଗର ସେଇ ବାଟରେ ଯାଉଁ ଯାଉଁ ଅଟକି ଗଲେ )

ସାଗର—କ'ଣ ହୋଇଚି ଆଜ୍ଞା; ଆପଣମାନେ ଭାରି ବ୍ୟସ୍ତ, କଥା କଅଣ ?

ପୀତ – କ'ଣ କହିବି ବାବୁ, ଷାଠିଏ ଟଙ୍କା ଥିଲା, ଯେମିତ ହେଲେ ପୁଅର ପରୀକ୍ଷା ଫିସ୍ ଦାଖଲ ହୋଇଥାନ୍ତା —

ସାଗର—ହଁ, କ'ଣ ହେଲା ?

ଶଙ୍କର—ପକେଟରୁ କିଏ ନେଇଗଲା ଆଜ୍ଞା ! କହନ୍ତି ମୁଣ୍ଡ, ମାସକର ଦରମା ହାତକୁ ହାତ ଚାଲିଗଲା ।

ପୀତ—ବାବୁର ପରୀକ୍ଷା ଫିସ୍ ଟଙ୍କା—ଶଙ୍କର ବାବୁ, ମୁଁ କ'ଣ କରିବି ! କ'ଣ କହି ପୁଅକୁ ବୁଝେଇବି । ଏତେ ବଡ ସହରଗ···ଉଃ, ଭଗବାନ୍··· ଏତେ ବଡ଼ ଟିକେ ପିଲାର ସବୁ ଆଶା ତୁମେ ଚୁରି ଦେଲ !

ସାଗର—କି ମୁଷ୍କିଲ କଥା, ସବୁ ଟଙ୍କା ନେଇ ପକେଟ୍‌ରେ ରଖି-
ଥିଲେ ? ଅଚ୍ଛା, ଆପଣ ବ୍ୟସ୍ତ ହୁଅନ୍ତୁ ନ ! ଆପଣ ସିଧା ଏଇ
ରାସ୍ତାରେ···ମାନେ···ପୋଷ୍ଟ ଅଫିସ୍‌ଠୁ ଘରକି ଆସିଲେ ତ ?

ପୀତ—ଆଜ୍ଞ ତ କୁଆଡେ ଯାଇ ନ ବାବୁ !

ସାଗର—କୁଆଡ଼େ ଯିବ ! ଟିକଏ ଅପେକ୍ଷା କରନ୍ତୁ, ମୁଁ ସାଙ୍ଗେ
ସାଙ୍ଗେ ଆସୁଚି । ( ପ୍ରସ୍ଥାନ )

ଶଙ୍କର—( ନୀରବ )

ପୀତ—ସେ ବାବୁଟି···

ଶଙ୍କର—ଆମ ଅଫିସର୍ ଅତନୁ ବାବୁଙ୍କ ସାଙ୍ଗ—ମୁଁ ଦପ୍ତରରେ
କେତେଥର ଦେଖିଲଣି । ସେଙ୍କ ନାଁ, ହଁ, ହଁ, ସାଗର ବାବୁ—
ଖରି ଭଲ ମଣିଷ ।

ପୀତ—ଟଙ୍କା କ'ଣ ସତରେ ସେ ବାବୁ···

ଶଙ୍କର—ଆପଣ ପାଗଳ ହେଲେ ଆଜ୍ଞା ! ଟଙ୍କା ଯିଏ ନେଇଚି,
ସେ କ'ଣ ଆଉ Post Office ପାଖରେ ଥିବ ! ସେ
ହୁଏତ କୋଉ ହୋଟେଲ କି ସିନେମା ହଲରେ ବସି
ଫୂର୍ତ୍ତି କରୁଥିବ । ଆପଣ ଆସନ୍ତୁ—ଛିଡ଼ା ହେଇ ଲଭ ନାହିଁ ।

ପୀତ—ନା, ସେ ଟଙ୍କା ଆଉ ଆସିବ କୋଉଠୁ ! ଉଃ !

ଶଙ୍କର—ଆପଣ ଚାଲନ୍ତୁ । ( ଦୁହେଁ ପ୍ରସ୍ଥାନ କଲେ )

—ପରଦା—



## —ତୃତୀୟ ଦୃଶ୍ୟ—

[ପୀତବାସବାବୁଙ୍କ ଘର । ପରଦା ଉଠିଲାପରେ ଦେଖାଗଲା— ପୀତବାସ ବାବୁଙ୍କ ଝିଅ ସ୍ବଚ୍ଛ ଲଣ୍ଠନ ବତୀ ସଜାଡ଼ିବାରେ ବ୍ୟସ୍ତ । ଆସିଲେ ଅଳକା ଦେଈ, ପୀତବାସ ବାବୁଙ୍କ ସ୍ତ୍ରୀ ]

**ଅଳକା**—( ହାତରେ ସଞ୍ଜ କନା ) ସ୍ବଚ୍ଛ; ଆଲୋ ମା, ଘରେ ତ କିରାସିନ ତେଲ ଟୋପାଏ ନାହିଁ, ବତୀ ସଜାଡ଼ିଲେ କ'ଣ ହବ । ଡବରେ କ'ଣ ଟିକିଏ ଅଛି, ସେଇଥିରେ ଘାତ ଗଣ୍ଡିକ ବସେଇ ଦେ—

**ସ୍ବଚ୍ଛ**—ବନୁ ତୋ ଫେର ପାଠ ପଢ଼ିବ । ମୁଣ୍ଡ ଉପରେ ତା'ର ପରୀକ୍ଷା, ତାକୁ ତ ହାଇବାଣ କଲେ ହବ ନ ବୋଉ !

**ଅଳକା**—ଏତେ ହାଇବାଣ ହେଇ ପୁଅ ମୋର ପଢ଼ୁଚି, ତା' କପାଳରେ କ'ଣ ଅଛି କେଜାଣି !

**ବନୁ**—(ଭିତରୁ) କ'ଣ ବୋଉ ?...

**ସ୍ବଚ୍ଛ**—ନାଇଁ, କିରାସିନ ତେଲ ନାହିଁ ଯେ—

**ବନୁ**—ନ ଥାଉ, ମୁଁ ଦାଣ୍ଡରେ ବତୀଖୁଣ୍ଟି ତଳେ ବସି ପଢ଼ିବି । ବାପା ଆସିଲେ ତେଲ ନେଇ ଆସିବା ।

**ଅଳକା**—ହଁ, ଦରମା ନେଇ ଅସୁ ଆସୁ ତାଙ୍କର ଆଜ ଡେରି ହବ ।

**ସ୍ବଚ୍ଛ**—ବନୁ, ମୁଁ ଗୋବିନ୍ଦ ଅଜାକୁ କହିବି, ସେ ତେଲ ଦେବେ ।

**ଅଳକା**—(ସଞ୍ଜବତୀ ବଳୁଥିଲେ) ତୁ ଗୋବିନ୍ଦକୁ କହିବୁ ?

ରଞ୍ଜୁ—ହଁ, ତାଙ୍କ ପାନେଶ୍ୱ ପାଖରେ ଡ଼ାକ କହିଲ ଯେ, ସେ ଦେବେ ବୋଲି କହିଲେ । ଆମରେ ଆସିଲେ ତାଙ୍କ ପାଣ୍ଡିକ ତାଙ୍କୁ ଦେଇଦବା ।

ବନୁ—ବୋଉ, ମୋ ମନଟା କାହିଁକ ଆଜ ··

ଅଳକା—କ'ଣ ହେଉଚ ବନୁ ?

ବନୁ—ସେ ବାବୁଙ୍କ କଥା ଶୁଣିଲ ବେଳୁ ମୋ ମନରେ ଭାରି କଷ୍ଟ ଆସୁଚ ! ବୋଉ ଲୋ, ଭଗବାନ ଆମକୁ କାହିଁକ ଗରିବ କଲେ ବୋଉ ! ଖଟି ଖଟି ବାପାଙ୍କର ଦେହର ଅବସ୍ଥା କ'ଣ ହେଲଣି; ଅଭାବ ଆମକୁ ଗ୍ରାଉ୍ନ ବୋଲ ସିନା···

ରଞ୍ଜୁ—ଏ ବନୁ ! କ'ଣ ହେଇଚ କ'ରେ ?···

ବନୁ—ନାହିଁ ଅପା, କାଗଜ ବକଲି ବୋଲି ମୁଁ କ'ଣ ଭଦ୍ର ଘରର ପିଲ ନୁହେଁ ? ଜଣେ ବାବୁ ମତେ କହିଲେ, "ହଇରେ, ତୁ ତ ଭଦ୍ର ଘରର ପିଲ ପରି ଦେଖା ଯାଉଚୁ ··"

(ଏତିକବେଳେ ଗୋବନ୍ଦ କରସିନ ତେଲ ନେଇ ଆସିଲ୍ଲ)

ଗୋବନ୍ଦ—ନେ, ମା ! ତେଲ ନେ—

ଅଳକା—(ସଞ୍ଜ ଲଗାଇବାକୁ ଯାଉ ଯାଉ) ଗୋବନ୍ଦ ତମର ତ ବଜୁଳ ଆଲୁଅ, ତମ ଘରେ କରସିନ ଫେର ରଖିଚ କାହିଁକ ?

ଗୋବନ୍ଦ—ବିଜୁଳବତ୍ତି ହାଲ କ'ଣ ଦେଖୁନ କ ମା ! କରସିନ ଟିକଏ ନ ରଖିଲେ ତୁମେ ଅନ୍ଧାରରେ ବସିବ ! କମ୍ପାନୀ ଆଲୁଅ ମୋଟ ଉପରେ ଅସୁବିଧା ! ସେ ହାତ କଥା; ଲଣ୍ଠନଟାଏ ଲଗେଇ ଦେଲେ ତ ଗଲା···

(ସଞ୍ଜବତ୍ତି ନେଇ ଅଳକା ଭିତରକୁ ଗଲେ; ତେଲ ପୂରାଇ ରଞ୍ଜୁ ଲଣ୍ଠନ ଲଗାଇଲା)

ବନ୍ଲୁ—ତମେ ଆମର ବହୁତ ଉପକାର କଲ ଗୋବନ୍ଦ ଅଜା ! ମୋର ପରୀକ୍ଷାବେଳେ···

ଗୋବନ୍ଦ—ହଇ ତ, ଭଲ ମନେ ପଡ଼ିଲା । ବନ୍ଲୁବାବୁ, ତୁମେ ଆମ ଘରକୁ ଆସ, ବଜୁଳି ଆଲୁଅ ତଳେ ସେଇଠି ବସି ପଢ଼ିବ ! ପଢ଼ାରେ କୋଉ କଥା ବୁଝିବାକୁ ଥିଲେ ବାବୁଙ୍କୁ କି ଅସୀତା ମା'କୁ ମୋର ପଚାରିବ—

ବନ୍ଲୁ—ନାଇଁ ଅଜା, ତେଲ ତ ହେଲାଣି···ମୁଁ ଏଇଠି ପଢ଼ୁଛି । (ବନ୍ଲୁ ଲଣ୍ଠନ ନେଇ ଗ୍ଳଲିଗଲା । ଏତିକିବେଳେ ଦୂରରେ ସନ୍ଧ୍ୟା-ଆରତିର ଘଣ୍ଟା ଶୁଭିଲା; ଗୋବନ୍ଦ ପ୍ରଣାମଟିଏ ଜଣାଇ ଭିତରକୁ ଗିବାବେଳକୁ ପୀତବାସ ବାବୁ ସଉଦାପତ୍ର ଧରି ଆସିଲେ)

ଗ୍ଳନ୍ଦ—ଦରମା ପାଇଲ ବାପା ?

ପୀତ—ହଁ, ମା, ଦରମା ଗଣ୍ଡାକ ପାଇଥିଲି, ହେଲେ ସବୁତକ ଚାଲି ମା, ହଜିଗଲା !

ଗ୍ଳନ୍ଦ—ହଜିଗଲା ? (ଉଦ୍‌ବଗ୍ନ ହୋଇ)

ପୀତ—ଚୋରର ହାତରେ ଦେଇ ଆସିଲିରେ ମା, ବନ୍ଲୁର ପରୀକ୍ଷା ଫିସ୍‌ଟା ବି ଠିକ୍ ସମୟରେ ତାକୁ ଦେଇ ପାରିଲି ନାଇଁ···

ଗ୍ଳନ୍ଦ—ଚୋରେ ନେଇଗଲା ! ତୁମେ ଇମିତି ବ୍ୟସ୍ତ ହୁଅ ନି ବାପା । ଚୋର ସିନା ଟଙ୍କା କେତୋଟା ନେଇଗଲା, ଆମ କପାଳ ତ ନେଇ ଯାଇନି !

ପୀତ—ସବୁ ଈଶ୍ୱରଙ୍କ ଇଚ୍ଛା ମା, ହେଲେ ପୁଅ ମୋର ଫେରେ-ବେଳେ ଦଉଡ଼ି ଆସିବ, ମୁଁ ତାକୁ କ'ଣ କହି ବୁଝେଇବି

କହିଲୁ ! କେତେ କଷ୍ଟ ସହି ପିଲାଟା ପାଠ ନ ପଢ଼ୁଛି ! ବନୁ ଭଳିଆ ପିଲା ଖବର କାଗଜ ବିକି ପଇସା କମେଇବ; ଘରେ କରସିମା ନ ଥିଲେ ମ୍ୟୁନିସିପାଲିଟି ଲ୍ୟାମ୍ପ ତଳେ ବହି ମେଲେଇ ବସିବ···କେଡ଼େ ବଡ଼ ଆଶା ତା'ର ଚୂନା ହୋଇଗଲା କହିଲୁ ମା ?

ସ୍ମୃତି—ଥାଉ ବାପା, ବନୁ ଆସୁଛି ।

ବନୁ—(ପ୍ରବେଶ) କ'ଣ ହୋଇଛି ଅପା ! ବାପା କାହିଁକି ଇମିତି ବ୍ୟସ୍ତ ହଉଚନ୍ତି ?

ପୀତି—ବନୁ !···

ସ୍ମୃତି—ଆଚ୍ଛା ବନୁ, ଆମେ ପାଠ ପଢ଼ିବା ବୋଲି କ'ଣ ବାପା ମା'ଙ୍କୁ ଦୁଃଖ ଦବା — କନ୍ଦେଇବା--?

ପୀତି—ଥାଉ ମା, ଥାଉ । ବନୁ, ତୁ ଆମର ଯା; ମୁଁ ଯାଉଚି କେଉଁଠୁ ଦେଖେଁ···

ସ୍ମୃତି—ବାପାଙ୍କର ଆଜି ଦରମା ମିଳିଲା ନ । ଡ଼େରି ହବ । କ'ଣ କରିବା କହିଲୁ ?

ବନୁ—ଅପା, ମୋ ପାଖରେ ୧୧ ଶ ଟଙ୍କା ଯାଏ ଅଛି···ଆଜି ୩୦।୪୦ ଟଙ୍କା ମିଳିବ ଯେ । ମୁଁ ଯାଉଚି, ଏଇନେ ନେଇ ଆସିବି !

ପୀତି—ଏତେ ଟଙ୍କା ତୁ କେଉଁଠୁ ଆଣିବୁରେ ବନୁ ?

ବନୁ—ନାହିଁ ବାପା, ଆମ ଖବର କାଗଜ ଅଫିସ୍‌ର ବଡ ବାବୁ ମତେ କହିଚନ୍ତି, ନିଶ୍ଚେ ଦେବେ । ସେ ମତେ ଖୁବ ଭଲପାନ୍ତି । ମୁଁ ଯାଉଚି ।

ରତ୍ନ—ଆରେ ବନୁ, ଗଣ୍ଡାଏ କ'ଣ ଖାଇଦେଇ ଯା, ବୋଉ ଏଇନେ ବ୍ୟସ୍ତ ହବ !

ବନୁ—ଅଫିସ ବନ୍ଦ ହେଇଯିବ ଅପା, ମୁଁ ଏଇ ସାଙ୍ଗେ ସାଙ୍ଗେ ଆସୁଚି ! (ପ୍ରସ୍ଥାନ)

ପୀତ – ବନୁ ! ଏ କଙ୍ଗାଳ କେରାନି କୁଳରେ ତୋର ଜନ୍ମ କାହିଁକି ହେଲା ବାପା ? ଏତେ ବୁଦ୍ଧି ! (ଆନନ୍ଦାଶ୍ରୁ) ଭଗବାନ, ତୁମେ ଅଛ, ତୁମେ ନିଶ୍ଚୟ ଅଛ ! ନ ହେଲେ ବନୁ ମୁଣ୍ଡରେ ଏ ବୁଦ୍ଧି ଆଉ ରଖିଲା କିଏ ?

ରତ୍ନ – ଚମେ ଆସ ବାପା, ଗୋଡ଼ ହାତ ଧୂଅ !

ସାଗର – ( ଆସିଲେ, ରତ୍ନ ଟିକିଏ ଆଡ଼ ହେଇଗଲେ ) ନିଅନ୍ତୁ, ଆପଣଙ୍କ ଟଙ୍କା ! କୁଆଡ଼େ ଖସିଯିବ ରାବଚନ୍ଦ୍ର ? ସାଗର ଆଖିରେ ଧୂଳି ଦେଇ ଖସିଯିବ କୁଆଡ଼େ ଆଜ୍ଞା ! ପକେଟରେ ଆପଣଙ୍କ କେତେ ଟଙ୍କା ଥିଲା—ଷାଠିଏ ନା !

( ଛଅ ଖଣ୍ଡି ଦଶ ଟଙ୍କିଆ ନୋଟ ଦେଲେ )

ପୀତ—(ଟଙ୍କା ନେଇ ଦେଖିଲେ) ନାଁ, ଏ ଟଙ୍କା ତ ମୋର ନୁହେଁ ! ଦଶଟଙ୍କିଆ ନୋଟ ତ ମୋ ପକେଟରେ ମୋଟେ ନ ଥିଲା । ନାଁ, ବାବୁ ! ମୋ ସକାଶେ ଆପଣ କାହିଁକି କଷ୍ଟ ସ୍ୱୀକାର କରି···ନା···ନା···

( ଏତିକିବେଳେ ଅଳକା ଦେଖି ଆସିଛନ୍ତି )

ସାଗର—ଆପଣ ତ ପରୀକ୍ଷା ଫିସ୍ ଟଙ୍କା ପାଇଲେ·· ଆଉ ସବୁକଥା ପରେ । ଆପଣଙ୍କ ପୁଅ ଆଗେ ପରୀକ୍ଷା ଦଉ, ଭଲ ଭାବରେ ପାଶ୍ କରୁ—ମୋ ଟଙ୍କା ମୋତେ ମିଳିଯିବ ! ଆପଣ ଟଙ୍କା ରଖନ୍ତୁ । ବନୁଟିକୁ ମୁଁ ଯଦି ମୋ ନିଜର ସାନ

ଭାଇ ବୋଲି ମନେ କରେ, ଆପଣଙ୍କର କ'ଣ କିଛି ଆପତ୍ତି ଅଛି ?

**ପୀତ**—ମତେ ଅପରାଧୀ କରନି ବାବୁ ! ଏ ଟଙ୍କା ମୁଁ ଯଦି ଫେରେଇ ଦିଏ, ସେ ମୋର ଅପରାଧ ହବ । ତୁମର ଏ ମହାନୁଭବକୁ ମୁଁ ଠେଲି ଦେଇ ପାରିବିନି ବାପା !

**ସାଗର**—ମତେ ଆପଣ ଠିକ୍ ଆପଣଙ୍କ ପୁଅ ପରି ଦେଖିବେ ! ଆପଣଙ୍କ ମନ ଖୁସିରେ ମୋର କ'ଣ ଭାଗ ନବାର ଅଧିକାର ନାହିଁ ?

**ଅଳକା**—ଅଖିଆ ଅପିଆ ବନୁଟା କ'ଣ ଫେର୍ କୁଆଡେ ପଳେଇଲା ? (କହୁଁ କହୁଁ ଆସିଲେ)

**ସାଗର**—ନମସ୍କାର ମାଉସୀ !

**ଅଳକା**—ତା ସକାଳେ ମୋ ମନଟା କାହିଁକି ଭାରି ଗୋଳେଇ ଘାଣ୍ଟି ହଉଚି ! କିଛି ଖାଇନି, ଫେର୍ କୁଆଡେ଼ ପଳେଇଗଲା !

**ସ୍ବରୁ**—(ନିମ୍ନ ସ୍ୱରରେ) ତୁ କାହିଁକି ବ୍ୟସ୍ତ ହଉଚୁ ବୋଉ ? ସେ ଏଇ ସାଙ୍ଗେ ସାଙ୍ଗେ ଆସିବ । (ଏତିକିବେଳେ ବାହାରୁ ପାଟି ଶୁଭିଲା । 'ବାବୁ' 'ବାବୁ' ଡ଼ାକି ଗୋବିନ୍ଦ ପଶି ଆସିଲା)

**ଗୋବିନ୍ଦ**— ବାବୁ, ତୁମେ ଇଆଡେ ଆସ !

**ପୀତ**—କ'ଣ ଗୋବିନ୍ଦ ?···

**ଗୋବିନ୍ଦ**—କନବାବୁକୁ କିଏ ଓଲଟ୍ ନାଲି ବାବୁ ! (ବାହାରେ କୋଳାହଳ ଶୁଭିଲା) ମଟରେ ମାଡ଼ି ଚକିଲଚି ବାବୁ···ମୋ ବନୁବାବୁ ଅଚେତ ହୋଇ ପଡ଼ିଚି ! ଆସ ବାବୁ, ଦଉଡ଼ି ଆସ ! (ଆଗରେ ଦୌଡିଲା)

ପ୍ରୀତି—ବନ୍ଧୁ ! ବନ୍ଧୁ ! ଭଗବାନ ! ଏ କ'ଣ କଲ ତୁମେ ? ବନ୍ଧୁ ! ବନ୍ଧୁ ! (ପାଗଳ ପରି ଚିତ୍କାର କରି ଚାଲିଗଲେ)

ଅଳକା—ଆଲୋ ମୋ ପୁଅ କୁଆଡେ ଗଲା ଲୋ ! ମୁଁ କ'ଣ କରିବି ? ବନ୍ଧୁ ! (କାନ୍ଦି କାନ୍ଦି ଯାଉଥିଲେ)

ସାଗର—ଓଃ ଭଗବାନ !! (ସମସ୍ତଙ୍କର ପ୍ରସ୍ଥାନ)

—ପରଦା—

—ଚତୁର୍ଥ ଦୃଶ୍ୟ—

[ଅଘୋର ବାବୁଙ୍କ ଅଳିନ୍ଦ । ପରଦା ଉଠିଲା ପରେ ଦେଖାଗଲା, ଅଘୋର ବାବୁ ବ୍ୟସ୍ତ ଭାବରେ ବାହାରକୁ ଯିବାକୁ ଉଦ୍ୟତ, ପଛରୁ ଡାକି ଡାକି ଆସିଲେ ସୁଭଦ୍ରାଙ୍ଗୀ । ]

ସୁଭଦ୍ରା—ସାର୍ ! ସାର୍ ! ନିଅନ୍ତୁ ଆପଣଙ୍କ ପାନ ଡବା ।

ଅଘୋର—(ଡବା ନେଇ) ଆଚ୍ଛା, ସୁଭଦ୍ରାଙ୍ଗୀ ! ଅଘୋର ଭାଇ ବୋଲି ନ ଡାକି ଫେର୍ ସେଇ ସାର୍ ବୋଲି ଡାକିଲ !

ସୁଭଦ୍ରା—କେତେଗୁଡ଼ାଏ ଦିନର ଅଭ୍ୟାସ କି' ନା···ଭୁଲରେ—

ଅଘୋର—ସତ କଥା ସୁଭଦ୍ରାଙ୍ଗୀ ! ତମ ଭଉଣୀଙ୍କର ବି ବେଳେ-ବେଳେ ସେଇ ଭୁଲ ହୋଇ ଯାଉଚି !

ସୁଭଦ୍ରାଙ୍ଗୀ – କନୁ ଭୁଲଟା ହୋଇଚ ତମର ! ତମେ ତ ଆମ ଦୁ’ ଭଉଣୀଙ୍କି ଟିଉସନ କରୁଥିଲ, ଗୋଟିକୁ ବାହା ହୋଇ ପଡ଼ିଲ କାହିଁକି ?

ଅଘୋର – Love ପାଖରେ ଟିଉସନ୍‌ର ମାନେ ଆଉ କ’ଣ ଥାଏ ସୁଭଦ୍ରାଙ୍ଗୀ ! ଶ୍ୟାମାଙ୍ଗୀ ତ ମତେ ବାରମ୍ବାର.........

ସୁଭଦ୍ରା—ଅପାର କ’ଣ ଦୋଷ ? ତମେ ତ.........

ଅଘୋର—ଦୋଷଟା ମୋର, ସତ କଥା ! ବଡ଼ ଭୁଲ ମୋର ହୋଇଗଲା !

ଶ୍ୟାମାଙ୍ଗୀ – (ଆସିଲେ) କ’ଣ ଭୁଲ ହୋଇଚଲେ ?

ସୁଭଦ୍ରା – ଅପା, ସାର୍ କହୁଚନ୍ତି, ତତେ ବାହା ହୋଇ ତାଙ୍କର ଘର ଭୁଲ ହୋଇଗଲା !

ଶ୍ୟାମାଙ୍ଗୀ – ଭୁଲଟା ତାଙ୍କର ନୁହେଁ ସୁଭ, ଭୁଲ ହୋଇଗଲା ମୋର !

ଅଘୋର – ଭୁଲ ଯାହାର ପଛକେ ହଉ, ସବୁ ଚକ ଦାଉ ମତେ ଏଇନେ ସମ୍ଭାଳିବାକୁ ପଡ଼ୁଚି ! ତମେ ଦୁ’ ଭଉଣୀଯାକ ମୋ ଉପରେ ସାତମତ ଅତ୍ୟାଚାର ଚଳେଇଚ !

ସୁଭଦ୍ରା—ସାର୍ !......

ଅଘୋର—ପୁଣି ସେଇ ସାର୍ ?

ସୁଭଦ୍ରା—ଅଘୋର ଭାଇ, ଅପା କ’ଣ ଠିକ୍ ତମର ମନଲାଖି ହୋଇନ ?

ଅଘୋର—ସେ କଥା ଆଉ ପଚାରିବାକୁ ଅଛି ? ଚେହେରା ଦେଖି ବୁଝୁନ ଯେ ପୁଣି ପଚାରୁଚ ! ତାଙ୍କ ନାଁ ସ୍ଥୂଳାଙ୍ଗୀ ନ ହୋଇ ଶ୍ୟାମାଙ୍ଗୀ ଯେ କାହିଁକି ହେଲା ସେଇକଥା ମୁଁ ବେଳେବେଳେ ଭାବେଁ ! ଆଉ ତୁମ ନାଁ ବି ସୁଭଦ୍ରାଙ୍ଗୀ ନ ହୋଇ ପୃଷ୍ଠାଙ୍ଗୀ ହୋଇଥିଲେ ଭଲ ହୋଇଥାନ୍ତା ! ଆଃ ! –

ଶ୍ୟାମାଙ୍ଗୀ—ଫାଜଲାମି କରିବାକୁ ତମର ଆଉ ବୟସ ଅଛି ବୋଲି ତମେ ଭାବୁଚ ?

ଅଘୋର—ମାନେ ? ମୁଁ କ'ଣ ବୁଢ଼ା ହେଇ ଗଲିଣି ?

ସୁଭଦ୍ରା—ତୁମେ ଯାଅ ଅଘୋର ଭାଇ, ଅପା ଏଇନେ କଳି ଲଗେଇବେ !

ଅଘୋର—କଳି ଲଗେଇବାକୁ ଯାହାର ଜନ୍ମ···ସେ ଆଉ କ'ଣ କରିବ ! ହେଲେ ସୁଭଦ୍ରାଙ୍ଗୀ, ତୁମେ ଆମର ଅତି ଭଲ !

ଶ୍ୟାମାଙ୍ଗୀ—ଏଇ ଭଲଟିକ ବାହାହେଲ ନାହିଁ !

ଅଘୋର—ମୋର ତ ସେଇ ଚିନ୍ତା···

ସୁଭଦ୍ରା—କ'ଣ ଚିନ୍ତା ? ଅତି ଫାଜିଲ !

ଅଘୋର—କେମିତି ସତ୍-ପାତ୍ରରେ ଅର୍ପଣ କରିବ ! ବପୁବନ୍ତ ସୁପୁରୁଷଟିଏ ଯୋଗାଡ଼ କଲେ ତ···(ସମସ୍ତେ ହସିଲେ)

ଶ୍ୟାମାଙ୍ଗୀ—ହଉ, ଆସିଲା ବେଳେ ମନେ କରି ଭଲ ଶାଢ଼ୀ ଆଉ ବ୍ଲାଉଜ୍ ଆଣିବ । ସୁଭଦ୍ରାର କାଲି ପୋଗ୍ରାମ୍ ଅଛି !

ଅଘୋର—ପୋଗ୍ରାମ୍···ଓ···ମିଉଜିକ୍ ! ସତରେ ସୁଭଦ୍ରାଙ୍ଗୀ, ତମର ଯେଉଁ ଗଳା···ବେଳେବେଳେ ମୋର ମନେହୁଏ, Words-worthଙ୍କ ପରି ତମ ହାଇଲ୍ୟାଣ୍ଡ ଭଉଣୀଙ୍କ ଉପରେ ହଠାତ୍ ଗୋଟିଏ କବିତା ଲେଖି ପକାଏ ! କିନ୍ତୁ ମୋର ଦୁର୍ଭାଗ୍ୟ ! କବିତା ଦେବୀ ଭୁଲରେ ମୋ ପାଖ ମାଡ଼ନ୍ତି ନି···

ଶ୍ୟାମାଙ୍ଗୀ—କବିତା ଦେବୀ ନ ଆସନ୍ତୁ, ସବିତା ଦେବୀ ତ ଆଜିକାଲି ଖୁବ୍ ହଉଡ ଧାପଡ଼ କରୁଚନ୍ତି !

ସୁଭଦ୍ରା—ଠିକ୍ ମନେ ପକେଇଚ୍ ଅପା ! କହିବଟି ଅଘୋର ଭାଇ, ସେ ସବିତା ଦେବୀଟି କିଏ ? ସେ ତ କ'ଣ ତମ ପଛେ ପଛେ ଭାରି ଲାଗିଚନ୍ତି ?

ଅଘୋର—ତୁମ ଅପାଙ୍କର ସପତ୍ନୀ ହବାର କୌଣସି ଆଶା ତାଙ୍କର ନାହିଁ, ତେବେ ·ସେ ଜଣେ ନେଶୀ ଧରଣର ଲୋକ ···ବୃନ୍ଦା ପାଇଁ ମୋ ପକ୍ଷରେ ଦଉଡ଼ଚନ୍ତି । ତେବେ, ବୃନ୍ଦା ପାଣ୍ଡି ର ମାରଫତଦ୍ୱାର କଏ, ସେ କଥା ମତେ ଜଣା ନାହିଁ ।

ଶ୍ୟାମାଙ୍ଗୀ—ବୃନ୍ଦା ପାନ୍ଦା କଥା ମିଛ । ମୁଁ ଜାଣେ···

ଅଘୋର—କଣ ଜାଣିଚ ? ମୁଁ କଣ ଏ ବୟସରେ ଆଉ ପ୍ରେମରେ ପଡ଼ିଚ ? ଗୋଟିଏ ଭୁଲର ପ୍ରାୟଶ୍ଚିତ୍ତ ତ ଏ ଜନ୍ମରେ ସରିବାର ନୁହେଁ, ପୁଣି ଅନ୍ୟ ଏକ ପ୍ରେମିକା ! ହା-ହା-ଦାରୁଣ ବଧ୍ୟ ! କ ଅଦ୍ଭୁତପୂର୍ବ ବିଡ଼ମ୍ବନା ! ହା-ହା-ହା···(ଚାଲିଗଲେ)

ସୁଭଦ୍ରା—ପାଗଳ

ଶ୍ୟାମାଙ୍ଗୀ—ସିଆଣିଆ ପାଗଳ ! ଏକ ନମ୍ବର ! ତୁ କଣ ଜାଣିଚୁ ?

ସୁଭଦ୍ରା—ହେଲେ ଅଘୋର ଭାଇ ଖାଣ୍ଟି ମଣିଷ । ତାଙ୍କ କଥାରେ ପଥରଟାଏ ବ ହସିବ । ହସ ଭିତରେ ଖାଣ୍ଟି କଥାଟି କହିବେ । ବୁଝିଲା ଲୋକ ଠିକ୍ ବୁଝିଲେ ହେଲା ।

ଶ୍ୟାମାଙ୍ଗୀ--ତୁ କ'ଣ ତାହେଲେ କହୁଚୁ, ମତେ ବାହାହେଇ ସେ ଭୁଲ କରିଚନ୍ତି !

ସୁଭଦ୍ରା—ରାଗିଲୁ କ ଅପା ?

(ଅଘୋର ବାବୁଙ୍କ ବୋଉ ଯମୁନା ଦେଈ ଆସିଲେ)

ଯମୁନା—ଆଲୋ ବୋହୁ ! ଅଘୋର କଣ ଫେରିନ ?

ଶ୍ୟାମାଙ୍ଗୀ—ନା' ତ !

ଯମୁନା—ତା'ର ଆଉ ବେଳ ଅବେଳ କିଛି ନାହିଁ ! କାମ କରିବ ବୋଲି, ଏତେ କାମ ଫେର୍ ମଣିଷ କରିବ !

ସୁଭଦ୍ରା—ସାଙ୍ଗମାନଙ୍କୁ ନେଇ ଆଡ୍ଡା ବ ଖୁବ୍ ହୁଏ ମାଉସୀ ! ବ୍ରିଜ୍‌ଖେଳରେ ଯେବେ ବସିଥିବେ, ତାଙ୍କୁ ଦିନରାତି ଜଣା ପଡ଼େନା-

ଯମୁନା—ପିଲ୍ ମନ - (ଶ୍ୟାମାଙ୍ଗୀର ପ୍ରସ୍ଥାନ) ପିଲ୍ ହେଲେ କ'ଣ ହେଲା, ମୁଣ୍ଡରେ କ'ଣ କମ୍ ଗୁଡ଼ାଏ ଦାପୁଚ୍ଛି ? ବାପ ଯେମିତି ମଝି ନଈରେ ଭସେଇ ଦେଇ ଗଲେ, ଆପଣା ଗୋଡରେ ଛିଡ଼ା ହୋଇ ଏ ପିଲା ଦୋ'ଟି ମଣିଷ ହୋଇଚନ୍ତି । ଅଧି ଆଉ ଅନ୍ତ ସଂସାରରେ ଭଲରେ ଥାନ୍ତୁ—ଏତିକି ଛଡ଼ା ମୋର ଆଉ କିଛି ଆଶା ନାହିଁ ମା !

ସୁଭଦ୍ରା—ମାଉସୀ ! ଅତନୁ ଭାଇ ଏକା ଯାହାକୁ ବାହା ହେବେ... ତମେ ତାକୁ ଟିକିଏ ଆଗରୁ ଆମକୁ ଦେଖେଇବ ।

ଯମୁନା—(ହସି ହସି) ହଉ, ହଉ, ସେ ପାଗଳା ତ କହୁଚି ମୋଟେ ବାହା ହବ ନାହିଁ !

ସୁଭଦ୍ରା—ବିଶ୍ୱାମିତ୍ର ମୁନି ! (ହସି) ଅତନୁ ଭାଇ ବିଶ୍ୱାମିତ୍ର ମୁନି ! (କହି ଚାଲିଗଲେ)

ଯମୁନା—ସେ ପାଗଳ ତ ମୋଟେ ଧରାଛୁଆଁ ଦଉନି । ସାଗରକୁ ବି ହାତ ଓଠ ଧରି ଏତେ କହିଲି, ନ ହେଲା ! ହଉ, କଣ କରୁଚନ୍ତି, କରନ୍ତୁ । (ଚାଲି ଯାଉଥିଲେ, ଏତିକିବେଳେ ଅତନୁ ଆସିଛନ୍ତି)

ଅତନୁ—କିଏ କ'ଣ କଲା କିଲୋ ବୋଉ, ସବୁବେଳେ ତ ଖାଲି ଚିଡ଼ି ଚିଡ଼ି ହେଉଛୁ କଣ, କଥା କଣ ?

ଯମୁନା—ଚିଡ଼ିବ ନାହିଁ ! ମୋ କଥା କ'ଣ କେହି ରଖୁଚ ?

ଅତନୁ—କଣ କହ, ମୁଁ ଶୁଣିବି ।

ଯମୁନା—ତୁ ଅଫିସରୁ ଆସିଚୁ; ଚାଲ, ଆଗେ ଟିକେ ଜଳଖିଆ ଖାଇ ସାର, ମୁଁ କହିବି ।

ଅତନୁ—ନାହିଁ, ତୁ ଏଇଠି କହ ।

ଯମୁନା—ଆରେ ଅନ୍ତୁ, କେତେବେଳେ କୋଉ କଥା···ଗୋଟିଏ ବୋହୂ ତ ଦେଖିଲ ଆଉ ଗୋଟିଏ ବୋହୂ କ'ଣ ଦେଖିବ ନି ?

ଅନ୍ତନୁ--ଓ, ଏଇ କଥା ! ମୁଣ୍ଡ ଉପରେ ତ ଦଶହାତ, ଗୋଟେ କଣି ଆଣିବା । (ହସି ହସି ଚାଲି ଯାଉଥିଲେ)

ଯମୁନା—ଆରେ ଶୁଣ (ଅନ୍ତନୁ ଫେରିଛନ୍ତି) ସେ ଆଉ ପାଗଳୀ କୁଆଡେ ଗଲା କରେ ? ସବୁ ଦିନେ ଆସେ, ଆଜ ତ କାହିଁକି ତାର ଦେଖା ନାହିଁ !

ଅନ୍ତନୁ—କିଏ, ଧାଟର ? ତୁ ଜାଣିନୁ କି ବୋଉ ? ସାଗର ପରି ଯାଇଚି······

ଯମୁନା—କୁଆଡ଼େ ?—

ଅନ୍ତନୁ—ବୋହୂ ଆଣିବ, ବୋହୂ ! ନୂଆବୋଉ, ଚୂ' ଜଳଖିଆ ଆଣ ! (ପ୍ରସ୍ଥାନ)

ଯମୁନା—ତମେ ଦି' ପାଗଳା ଯାକ ଠିକ୍ ଅଛ ! (ପଛେପଛେ ଗଲେ)

- - ପରଦା —

— ପଞ୍ଚମ ଦୃଶ୍ୟ —

[ ଡ଼କ୍ଟର ଦାସଙ୍କର ଘର । ପରଦା ଉଠିଲା ପରେ ଦେଖାଗଲା, ଆରାମରେ ବସି ଗୋବନ୍ଦ ଭଜନ ବୋଲୁଚ । ଗୋଟିଏ ଶୋଫାରେ ବସି ଗୀତ ଶୁଣୁଥିଲେ ଅସୀତା ]

— ଗୋବନ୍ଦର ଗୀତ —

ମନ, ଚିହ୍ନିଲୁ ନାହିଁ ତୋର ଘରକୁ
ଆଦର ନେଲୁ ସାନ ପରକୁ ! (ରେ ମନ) । ଘୋଷା ।

ରୂପ ବଜାର ଝଲ, ଭେଲକରେ ଭୁ ଭଲ —
ରସରେ ଗଲୁ ଭସି, କଷିଲୁ ଦବା ନଶି;
ନାଲଆ ଓଠ ହସ ଦରକୁ ! (ଭୁଲ ମନ) । ୧ ।

ଅଳପ ବହୁଛୁ ତୋତେ କଳପି ରଖ (ମନରେ !)
ଦେଖିବୁ ଯେବେ ତାର ନଳନ-ମୁଖ !

ପଞ୍ଚାପୂତ ତୁ କର, ଛଅ ବ୍ବେରଙ୍କୁ ଧର—
ସାତ ସନ୍ଧି କ ଭଜ, ଆଠର ପାଠ ନେଜ;
ନଅ ଦୁଆର କଳା କାରବାରକୁ ! (ଭୁଲ ମନ) ।୨।

ତିନ ବେଦ ଆଗୁଳର ଓଗାଳ ଡ଼େଇଁ,
ନାକ ସିଧା ତିନ ଛକ ଚା' ଲ୍ଲନା ଭୁଇଁ !

ଏକରେ କଲେ ଲପ୍ତ, ଶୂନ୍ୟରେ ହେବ ଥପ୍ତ,
ଆଖି ବୁଜାଣି ଖେଳ ଖେଳ ହୋଇବୁ ମେଳ—
ନ ଥିବ ଭୟ ଯମ ଡରକୁ ! (ଭୁଲ ମନ) । ୩ ।

ଅସୀତା—ଗୋବନ୍ଦ ଦାଦା, ତୁମେ ଏଇଠି ବସି ଭଜନ ବୋଲୁଥାଅ, ମୁଁ ଯାଉଛି, ଅଜା ଫେରିବା ଆଗରୁ ଜଳଖିଆ ଟିକଏ ତିଆରି କରି ରଖିଦେବି ! ଅଚନୁ ଅବା ସାଗର କେହି ଆସିଲେ ମତେ ଟିକଏ ଖବର ଦେବ !

ଗୋବନ୍ଦ—ଆଉ ଗୋଟିଏ ଭଜନ ଶୁଣିବ ନ ମା ?

ଅସୀତା—ତୁମେ ଭଜନ ଗାଉଥିଲେ ଶୁଣିବା ଲୋକର ଉଠିବାକୁ ଇଚ୍ଛା ହବ ନ ! କର୍ତ୍ତବ୍ୟ ଅନୁରୋଧରେ ଯିବି, ଫେରିଲାବେଳକୁ ସଚତରେ ଏକା ଅଜାଙ୍କୁ ଭାରି ଭୋକ ହେଉଥିବ । ଆଜ ଦିନଟା-ଯାକ ତାଙ୍କର ବାହାରେ ବାହାରେ କଟିଲାଣି !

ଗୋବନ୍ଦ—ହଉ ମା, ଯାଅ (ଅସୀତାର ପ୍ରସ୍ଥାନ) ତୁମେ ନ ଥିଲେ ବାବୁଙ୍କର ହାଲ ଯେ କ'ଣ ହୁଅନ୍ତା—(ମନକୁ ମନ କହୁଁ କହୁଁ ବାହାରୁ ଆସିଲେ ଅଚନୁ)

ଅଚନୁ—ଗୋବନ୍ଦ !

ଗୋବନ୍ଦ—ଆଜ୍ଞା !

ଅଚନୁ—ଡକ୍‌ଟର ଦାସ ? ··

ଗୋବନ୍ଦ—ବାବୁ ନିଜେ ଗାଡ଼ି ନେଇ କୁଆଡେ ଅଜ ଯାଇଚନ୍ତି ଯେ···

ଅଚନୁ—ନାହାନ୍ତି ତେବେ ! ଅସୀତା···

ଗୋବନ୍ଦ—ଏଇନେ ଜଳଖିଆ ତିଆରି କରିବାକୁ ଗଲେ । ଅସୀତା ମା' ନ ଥିଲେ, ବାବୁ ଆମର ଯେମିତି ଯନ୍ତ୍ରପାତି ନେଇ ସବୁବେଳେ ପାଗଳ—ଗଣ୍ଡାଏ ଖାଇବା ବି ତାଙ୍କର ହୁଅନ୍ତା ନାହିଁ ! ବସ ବାବୁ ; ଅସୀତା ମାଙ୍କୁ ଡ଼ାକିବି ?

ଅଚନୁ—ନା, ଦରକାର ନାଇ । ମୁଁ ଏଇଠି ବସିଚି, ଜଳଖିଆ ତିଆରି ହଉ ! (ଗୋବନ୍ଦ ଚାଲି ଯାଉଥିଲା)

ଗୋବନ୍ଦ – ଭଜନ ଶୁଣିବ ବାବୁ ?

ଅତନୁ—ନାଇଁ, ନାଇଁ, ତୁମେ ଯାଅ ଗୋବନ୍ଦ !

ଗୋବନ୍ଦ—ହଉ ବସ, ମୁଁ ଦେଖେଁ, ମା ମୋର କ'ଣ କରୁଚ ।

( ପ୍ରସ୍ଥାନ )

(ଅତନୁ ବସି ଗୋଟାଏ କ'ଣ ଲେଖୁଥିଲେ)

ସାଗର—(ଆସିଲେ । ଅତନୁ ଲେଖି ଚାଲିଛନ୍ତି, ସାଗର ପ୍ରତି ଲକ୍ଷ୍ୟ ନାଇଁ । ସାଗର ଆସି ଅତନୁର ସିଗ୍ରେଟ୍ ଟିଣଟି ପକେଟରେ ପକାଇଲେ ଓ ନିଜେ ସିଗ୍ରେଟ ପିଇଲେ)

ଅତନୁ—ନା, ଦେଖିଲ ତୋର ଭଦ୍ରତାଟି ବେଶ୍ !

ସାଗର—କଣ ବଡ ଗୁରୁକଥାଟାଏ କଲୁ ବୋଲି ତୋଠୁଁ ଆଜ ଭଦ୍ରତା ଶିଖିବାକୁ ହବ ଅତନୁ ?

ଅତନୁ—ତା ବରଂ ନ କଲୁ, କିନ୍ତୁ ଇମିତି ଜବରଦସ୍ତି ମୋ ଟିଣଟାକୁ ତୋ ପକେଟରେ ଦାଖଲ କରିବାର

ସାଗର—ବାସ୍, ତୁନ ହେଇ ଯା । ମାତ୍ର ଗୋଟିଏ ଟିଣ ସିଗାରେଟ ବଦଳରେ ତୋର କେତେ ବଡ଼ ଦୋ'ଟି ଉପକାର କରୁଚ ଜାଣୁ ?

ଅତନୁ—ଦୋ'ଟି ଉପକାର, ମାନେ ?—

ସାଗର—ନମ୍ବର ଏକ, T. B. କ୍ୟାନସର ଭଳି ଦୁରାରୋଗ୍ୟ ରୋଗମାନଙ୍କ କବଳରୁ ତୋର ଉଦ୍ଧାର; ନମ୍ବର ଦୁଇ, ମାଉସୀଙ୍କି ମୁଁ କଥା ଦେଇଚ, ତୋ ସିଗାରେଟ ଖିଆ ଛଡେଇବ । ମାନେ, ସିଗାରେଟ ତୋ ପାଖରେ ଦେଖିଲେଇଁ ନେଲି ବୋଲି ତୁ ଜାଣିବୁ ।

ଅତନୁ—ବୋଉ କ'ଣ ତା'ହେଲେ······

ସାଗର—ଜାଣନ୍ତି, ସମସ୍ତେ ଜାଣନ୍ତି । ଚୋର କିଛି ଦିନ ଆପଣାକୁ ଲୁଚେଇ ରଖି ପାରିବ । କିନ୍ତୁ ଯେ ଧୂଆଁ ପିଏ, ଅର୍ଥାତ୍— 'ମାଦକ ଦ୍ରବ୍ୟ' ଲୋକକୁ ସବୁବେଳେ ଚିହ୍ନା ପକେଇ ଦବ ଠିକ୍ ହାଟ ମଝିରେ······

ଅତନୁ—ସାଗର !

ସାଗର—ବନ୍ଧୁ ହିସାବରେ ତତେ ସାହାଯ୍ୟ କରିବା, ଆଉ ସୁଖ ଦୁଃଖରେ ସମଭାଗୀ ହେଇ ତତେ ସୁଖୀ କରେଇବା ମୋର ସର୍ବ ପ୍ରଥମ କର୍ତ୍ତବ୍ୟ । ଏ କର୍ତ୍ତବ୍ୟ ପାଳନରେ ତୁ ବାଧା ଦେଲେ ବି ମୁଁ ଶୁଣିବି ନାହିଁ ! ଜାଣିଚୁ ତ ମତେ ?

ଅତନୁ—ଜାଣିଚି ! ବନ୍ଧୁ ହେଲୁ ବୋଲି କଣ ମୋ ଉପରେ ମୁରବି-ପଣିଆ କରିବୁ !······

ସାଗର -- ଆଘାତ ପାଇଲୁ କ'ରେ ? ସତରେ ଅତନୁ, ବନ୍ଧୁ ହେଲେ ବି ତୋ ଭିତରେ ଆଉ ମୋ ଭିତରେ ବର୍ତ୍ତମାନ କେତେ ତଫାତ୍ । ସାଙ୍ଗ ହେଇ କେବେ ସିନା ଫୁଟ୍‌ବଲ ଖେଳୁଥିଲେ, କେବେ ସିନା ସାଙ୍ଗ ହେଇ ପାର୍କରେ ବସୁଥିଲେ, ସିନେମା ଯାଉଥିଲେ; ହେଲେ ଆଜି ତୋ ପୋଜିସନ୍······

ଅତନୁ - ଦେଖ ସାଗର ! ବଡ଼ ବୃକଶ ବଡ଼ ବୃକଶ କହି ମତେ ଯଥେଷ୍ଟ ଆଘାତ ଦେଇଚୁ । ତୋ ସାଙ୍ଗରେ ମନ ଖୋଲି ହିକଏ କଥାବାର୍ତ୍ତା କରିବାରେ ଏ ବଡ଼ ବୃକଶ ଯୋଉଦିନ ମତେ ବାଧା ଦବ, ସେଇଦିନ ମୁଁ ଇସ୍ତଫା ଦେଇ ଦେବି । ଆଉ ତୁ ବି ମନେ ରଖ, ଇମିତି କଥା ଯଦି ଫେର୍ ତୋଠୁଁ ଶୁଣେ ···

ସାଗର—ହାଁ,ହାଁ, ହଠାତ୍ ପ୍ରତିଜ୍ଞାଟାଏ କରି ପକା ନା, ଅନ୍ତୁଆରେ ଚଢ଼ିପିବୁ । ଅତନୁ, ଆମେ ଦୁହେଁ ସାଙ୍ଗ, ଅତି ଅନ୍ତରଙ୍ଗ ବନ୍ଧୁ କିନ୍ତୁ ଏ ବନ୍ଧୁତାରେ ଯଦି ତୋ ସ୍ତ୍ରୀ କେବେ ବାଧାଦିଏ......ମାନେ, ବୁଝୁଚୁ ତ ଭାଇ !

ଅତନୁ—ସେ ଭୟ ନାହିଁ ସାଗର, ମୁଁ ଠିକ୍ କରିଚି, ମୋଟେ ବାହା ହେବ ନାହିଁ !

ସାଗର—ଏଁ, ମାଉସୀଙ୍କ କଥା ଫେର୍ କ'ଣ ହବ ? ମାଉସୀ ତ ଜିଦ୍ ଧରି ବସିଚନ୍ତି, ଏଇସାଲେ ବୋହୂଟିଏ ନ ଦେଖିଲେ ଆସନ୍ତା ବର୍ଷକୁ ଆତ୍ମହତ୍ୟା...ମାନେ...(ହସି)

ଅତନୁ—ବୁଝିଲି, ଗୋଟାଏ ଚକ୍ରାନ୍ତ ! ଆଚ୍ଛା ସାଗର, ଗୋଟାଏ କାମ କର । ତୁ ବାହାଟିଏ ହୋଇପଡ଼ । ବୋହୂଟିକୁ ନେଇ ମୋ ବୋଉ ଜିମା କରି ଦେ !

ସାଗର—ସାବାସ୍ ! ମୁଁ ବାହା ହେବି...ତା'ପରେ ତୋ ଘରେନେଇ ଛାଡ଼ି ଦେଇ ଆସିବି ! ଏ ତ ବଡ଼ ଶକ୍ତି-ମଧୁର ପରାମର୍ଶ ! (ଦୁହେଁ ହସିଲେ) ମୋ କଥା ପରେ, ତୁ ଆଗ ବସାଟିଏ ବାନ୍ଧ, ବନ୍ଧୁ-ପତ୍ନୀ ଆସନ୍ତୁ; ତା ପରେ ମୋ କଥା ଦେଖା ଯିବ ।

ଅତନୁ—ମୋ ପାଇଁ ପାତ୍ରୀ ତା'ହେଲେ ବନ୍ଦୋବସ୍ତ କରି ସାରିଲୁଣି ନାଁ କଣ ?

ସାଗର—ମାଉସୀ ତ ଝିଅଟିକୁ ସବୁବେଳେ ଖୋଜୁଚନ୍ତି । କନ୍ୟା ଏକାବେଳକେ ତାଙ୍କର ମନଲାଖି ଆଉ ମୋ ମନ ବି ମାନିଚି ଯେତେବେଳେ ମୋର ବିଶ୍ୱାସ ତୋ ପସନ୍ଦ ବାହାରକୁ ଯିବନି । ତା'ଛଡ଼ା ସେ ଝିଅଟି ଉପରେ ଆମେ ଭାରି ଅବିଚାର କରୁଚୁଁ । ଆମର ଭାରି ଭୁଲ ହଉଚି ଅତନୁ ! (ପିଠିରେ ହାତ ରଖି)

ଅତନୁ—ସବୁ କଥା ତୁ ଖାଲି କହୁ ଗୃକିରୁ ସାଗର ! ମୁଁ କ'ଣ ସାଇକୋଲୋଜି କ୍ଲାସର ଜଣେ ସୁବୋଧ ଛାତ୍ର ଭଳି ଅଧ୍ୟାପକ ସାଗରଙ୍କର ଅନଭ୍ୟସ୍ତ ବକ୍ତୃତା ଶୁଣି ଯାଉଥିବି ଖାଲି ! ସତରେ ସାଗର, ଭୟଙ୍କର ବାଜେ ଗପିଯାଉ ତୁ !

ସାଗର—ତୁ ବାଧା ହେଇପଡ଼ ଅତନୁ, ଅସୀତାକୁ ବି ଛୁ'ଇ ବାଧା ହେଇ ପଡ଼ ! ମୋ କଥା ତ ତୁ ଜାଣିଚୁ···ପାର୍କରେ ବସେ, ଧର୍ମଶାଳାରେ ରାତି କଟେଇ ଦିଏ, ହୋଟେଲରେ ନଗଦ ବାକୀ ଉଭୟ ରେଟ୍‌ରେ ମିଲ୍ ଖାଇ ବସେ···ଘର ଦ୍ୱାର ନାହିଁ କେହି ନାହିଁ; ଯାହା ଜମି ବାଡ଼ି ଥିଲା ଭୂଦାନ ସୂତ୍ରରେ ଦାଦା ଖୁଡ଼ଙ୍କୁ ଦେଇ ଦେଲି ! ତାଙ୍କର ପିଲା ଛୁଆ; ସେ ତ ପୁଣି ଚଳିବେ ! ମୁଁ ଆଉ ଅସୀତା···ଆମ ଭିତରେ ପାର୍ଥକ୍ୟ ହଉଚି ଗୋଟାଏ ବିସ୍ମୟ ଚିହ୍ନ A note of admiration ! ହେଇପାରେ ନା ଅତନୁ, ଆପଣା ଆପଣା ଭିତରେ ଆମେ ଯେବେ ବାଲାନ୍ସ କରି ନ ନବା, ତା' ହେଲେ ଏ ଖେଳ ଆମକୁ ଦିନେ କାଳ ହବ !

ଅତନୁ—ଏ ସବୁ କଥା ହଠାତ୍ ଏଠି କାହିଁକି ସାଗର ?

ସାଗର—ଅସୀତା ସାଙ୍ଗରେ ଆମ ଦୁହିଁଙ୍କର ବନ୍ଧୁତା କିମିତି ହେଲା, ତିନି ତିନୋଟି ଜୀବନ କିମିତି ଗୋଟାଏ ରଜ୍ଜୁରେ ସମାନ ଭାବରେ ଗ୍ରନ୍ଥି ହେଇଗଲା, ସେ ଇତିହାସ ସଂଗ୍ରହ କରି ସମାଧାନ କରିବାର ଅବକାଶ ବର୍ତ୍ତମାନ ନାହିଁ !

ଅତନୁ—ସବୁ ଉଦ୍‌ଗାର କରି ସାରିଲୁ ନା ଆଉ କିଛି ବାକୀ ଅଛି ?

ସାଗର—ଶୁଣ ଅତନୁ ! (ଗମ୍ଭୀର ଓ ଦରଦଭରା କଣ୍ଠ) ଅତି ପବିତ୍ର ସୁନ୍ଦର ଫୁଟିଲା ଫୁଲଟିକୁ ଦେବ ମନ୍ଦିରରେ ସ୍ଥାନ ନ

ନେଇ ଖାଲି ଡେଙ୍ଗା ଉପରେ ଗ୍ରନ୍ଥି ଦେଲେ କ'ଣ ତା'ର ଜନ୍ମର ସାର୍ଥକତା ଆସିଲା ବୋଲି କୁହାଯିବ ? ଖରା ବର୍ଷାରେ ଚିନ୍ତା ବୁଝି ସଢ଼ିଯିବା ଅପେକ୍ଷା କାହାର ଗଳାର ମାଳ ହୋଇ ଶୋଭା ପାଇବା କ'ଣ ତା' ପକ୍ଷରେ ଭଲ ନୁହେଁ ? (ଅତନୁ କ'ଣ କହିବାକୁ ଯାଉଥିଲେ ମାତ୍ର ବାଧା ଦେଲେ ପଛପଟେ କଣ୍ଟକଣ ପର୍ଦ୍ଦାରୁ ଅସି ଛିଡ଼ା ହୋଇଥିବା ଡ: ଦାସ)

ଡ: ଦାସ—ବାଃ, ଏଇ ତ ଚରମ ଆଶାବାଦୀର ଦର୍ଶନ ! ସାଗର, ତୁମେ ଜଣେ ଚରମ ଆଶାବାଦୀ—optimist ! ହାଃ···ହାଃ··· ତମରି ଭଳି ନାଟେକଙ୍କୁ ନେଇ କେବଳ ବିଶ୍ୱର ଏଇ ମହା-ଚରିବାର ଶାନ୍ତିରେ କାଳ କଟେଇ ପାରେ ! ସତ କଥା My dear boy ! ଏ ନୈରାଶ୍ୟ—ଭରା ସଂସାର କ୍ଷେତ୍ରରେ ମନୁଷ୍ୟ ଯଦି କେବଳ ଆଶାବାଦୀ ହୋଇ ପାରନ୍ତା, ତା' ଦୁଃଖ ବହୁ ପରିମାଣରେ ଲାଘବ ହୋଇ ଯାଆନ୍ତା ! "ହା-ହତୋସ୍ମି"ର ସ୍ଲୋଗାନ୍ ଦେଇ ସେ ଆଉ କର୍ମମୟ ରାଜପଥ ଉପରେ ପାଦ ପକାନ୍ତା ନାହିଁ ! ସୁନ୍ଦର !

ସାଗର—ସାର୍, ଅସୀମା ଆମ ଉଭୟଙ୍କର ବାନ୍ଧବୀ !

ଡ: ଦାସ—ଅତି ପ୍ରିୟ-ବାନ୍ଧବୀ ! ମୁଁ ଜାଣେ ସାଗର ! ଏଇ ଭଲ ବନ୍ଧୁତ୍ୱର ପ୍ରଶଂସା ମୁଁ କରେଁ !

ସାଗର—ଆମ ତିନୋଟିଙ୍କୁ ଯେଉଁ ମମତାର ବନ୍ଧନରେ ଆପଣ ବାନ୍ଧି ରଖିଛନ୍ତି···(ଗମ୍ଭୀର ଅଥଚ ଦୃଢ଼ କଣ୍ଠରେ) ତାର ଶେଷ ଫଳ କଥା ଚିନ୍ତା କରି ବଡ଼ ବିବ୍ରତ ମୁଁ ହୋଇ ପଡ଼ୁଛି ସାର୍ !

ଡ: ଦାସ—ଗମ୍ଭୀରତା ସାଗରର ଧର୍ମ ହେଲେ ବି, ତମର ଆଜିର ଏ ଗମ୍ଭୀରତା ଏକ ନୂତନ ସନ୍ଧାନର ସଙ୍କେତ ଦିଏ ! ତୁମେ ନିଶ୍ଚୟ ଅସୀମାର ଭବିଷ୍ୟତ ପାଇଁ···

ସାଗର—ଆପଣଙ୍କ ଅନୁମାନ ନିର୍ଭୁଲ ସାର୍ !

ଡ଼: ଦାସ—ବେଶ୍ ତ ! ଏଥିରେ ବିସ୍ମିତ ବା ବିଚଳିତ ହେବାର କଣ ଅଛି ? ତୁମେ ହେଉଁ ଅସୀତାର ଶୁଭାନୁଧ୍ୟାୟୀ ବନ୍ଧୁ, ତମର-ମାନଙ୍କ ହାତରେ ଦେଇ ଯାଉଛି ମୁଁ ଏହାର ସମାଧାନ ! ଅସୀତା···ଅସୀତା···(ଡାକି ଡାକି ଭିତରକୁ ଚାଲିଗଲେ)

ସାଗର—ଡକ୍ଟର ଦାସ କ'ଣ କହିଗଲେ ଶୁଣିଲୁ ତ ?

ଅତନୁ—କିଛି କହି ନାହାନ୍ତି ତ ! ବରଂ ଦେଇଗଲେ ଆମ ହାତରେ ତାଙ୍କ ନାତୁଣୀଟିର ଭବିଷ୍ୟତ ସୁସ୍ଥାର ବିଗୁର ଦାୟିତ୍ୱ !

ସାଗର—(ହସି) କହ, ଗ୍ରହଣ କଲୁ ତ ?

ଅତନୁ—ମାନେ ? ନା, ହେଇ ପାରେ ନା—( ଦୃଢ଼ କଣ୍ଠରେ ) ହେଇପାରେ ନା—

ସାଗର—କାହିଁକି ହେଇ ପାରେ ନା ?

ଅସୀତା—( ଭିତରୁ ଆସିଲେ ) କ'ଣ ହେଇ ପାରେ ନା ସାଗର ?

ଅତନୁ—ବାଜେ କଥା···ସେ ସବୁ କିଛି ନୁହେଁ ଅସୀତା !

ଅସୀତା—ଉହୁଁ ! ଅଜା ମତେ କହିଲେ, ସେ ତମ ଦୁହିଁଙ୍କ କୁଆଡ଼େ ଗୋଟାଏ ବଡ଼ ପ୍ରୋବ୍ଲେମ୍ ଦେଇ ଯାଇଚନ୍ତି; କ'ଣ ଅତନୁ ? (ଉଭୟେ ନୀରବ) ମତେ ଲୁଚେଇବାର ମତଲବ ତା'ହେଲେ ? ବେଶ୍, ମୋର ଜାଣିବା ଯଦି କିଛି ଦରକାର ନାହିଁ, ଥାଉ ।

ସାଗର—କିନ୍ତୁ ଯେ ଯେ ତୁମରି ଜାଣିବା କଥା ଅସୀତା, ନ କହିଲେ ଅନ୍ୟାୟ ହବ !

ଅସୀତା— ତୁମେ କହିଲେ ବି ମୁଁ ଯଦି ନ ଶୁଣେ ?

ସାଗର--ଶୁଣିବାକୁ ହବ ଅସୀତା ! ତୁମେ ନ ଜାଣି ଆମ ଦୁହିଁଙ୍କ ଭିତରେ କୌଣସି ସମାଧାନ ହୋଇ ପାରେ ନା !

ଅତନୁ–ଥାଉ ସାଗର, କାହାରିକୁ ଅପମାନିତ କରିବାର ଚେଷ୍ଟା କରନା ।

ଅସୀତା–(ଗମ୍ଭୀର ଭାବେ) କଣ ହୋଇଛି ଅତନୁ ? please—

ଅତନୁ—ସାଗର କଥା ତୁମେ କ'ଣ ଜାଣିନ' ଅସୀତା ?

ଅସୀତା - ଜାଣେ, ପେଟ ଭିତରେ କିଛି ନ ରଖି ସବୁ ବାହାରକୁ ଫୋପାଡି ଦିଏ । ମତେ ଲୁଚୁଅ ନାହିଁ ସାଗର !

ସାଗର—ଶୁଣ ଅସୀତା ! ମୁଁ…

ଅତନୁ–ରହ, ମୁଁ ଆରମ୍ଭ କରୁଚି—

ଅସୀତା–( ବିରକ୍ତିରେ ) ତମେ ଦିହେଁ ତ ବଡ ସ୍ୱାର୍ଥପର ! ସବୁବେଳେ ନିଜ ନିଜ କଥା ନେଇ ବ୍ୟସ୍ତ ରହିଚ; ଅଥଚ…

ସାଗର—ଇଏ ଆମ କଥା ନୁହେଁ, ତୁମ କଥା !

ଅସୀତା—ମୋ କଥା ! ( ବିସ୍ମିତ ଭଙ୍ଗୀ)

ଅତନୁ—ହଁ, ତୁମ ବିବାହର ଦାୟିତ୍ୱ ଅଜା ଆମରି ଉପରେ ନ୍ୟସ୍ତ କରିଛନ୍ତି ।

ଅସୀତା—( ହସି ) ସେ ତ ଅଜାଙ୍କର ଅତି ବଡ଼ ଦୁର୍ବୁଦ୍ଧି ! ଆଚ୍ଛା, ତା'ପରେ ତୁମ ଦିହେଁ କ'ଣ କରୁଚ ?

ସାଗର--କୌଣସି ତୃତୀୟ ବ୍ୟକ୍ତିର ସନ୍ଧାନ ନ କରି ଆମ ନିଜ ଭିତରୁ…

ଅତନୁ—ସାଗରକୁ ତୁମେ ବିବାହ କର ଅସୀତା, ଦୁଶ୍ଚିନ୍ତାରୁ ସମସ୍ତେ ରକ୍ଷା ପା'ନ୍ତୁ !

ଅସୀତା – ତମର କଣ ଠିକ୍ ଏଇ ମତ ସାଗର ?–

ସାଗର – ଅତନୁର ବକ୍ତବ୍ୟ ଶେଷ ହେଲେ ମୋର ଯାହା କହିବାର ଅଛି, ମୁଁ ଆରମ୍ଭ କରିବ ।

ଅସୀତା – ଆରମ୍ଭଟା ମୋ ଉପରେ ଛାଡ଼ି ଦିଅ ସାଗର ! ତମ ସାଙ୍ଗରେ ବନ୍ଧୁତା ଅଛି ବୋଲି ତମ ଦୁହିଁଙ୍କ ଭିତରୁ ଜଣକୁ ଯେ ମୁଁ ବାହା ହେବି ଇମିତି କିଛି ସର୍ତ୍ତ ତ ଆଗରୁ ନ ଥିଲା; ନ ଥିଲା ବୋଧହୁଏ ! ଥିଲା କି ଅତନୁ ? Foolish ! ତମେ ଦୁ' ଜଣ ସମାନ ଗଧ, କେହି ମଣିଷ ନୁହଁ ।

ସାଗର—ଦେଖିଲୁ ଅତନୁ, ମୁଁ ଠିକ୍ ଏଇ କଥା କହୁ ନ ଥିଲି ? ଗୋଟାଏ କଣ୍ଠା ନିର୍ବୋଧ ଭଳି ତୁ ଏଣୁ ତେଣୁ ଗପିଲୁ, ଆଜ ବିନା ବିଚାରରେ ମୁଁ ବି ତୋରି ସାଙ୍ଗେ ଗଧ-ଶ୍ରେଣୀଭୁକ୍ତ ହେଲି । ଛି, ଛି ! ଇମିତି ହାସ୍ୟଜନକ ପ୍ରସ୍ତାବଟାଏ ଆଣିଲୁ ଯେ—ନା, ଅସୀତା ! ତମ ବିବାହ ମୋ ସାଙ୍ଗରେ ନୁହେଁ, ଏଇ ଗଧ ସାଙ୍ଗରେ ।

ଅସୀତା—ସାଗର ! ତୁମେ କ'ଣ ଭାବୁଚ ମୁଁ ତୁମକୁ ଭାରି ଘୃଣା କରେ ?

ସାଗର –ସେ କଥା ନୁହେଁ ଅସୀତା···

ଅସୀତା—କୌଣସି କଥା ନୁହେଁ, ଏ ପ୍ରସ୍ତାବ ତୁମେ withdraw କରି ନିଅ ! ମୁଁ ବିବାହ କରିବି କି ନ କରିବି ସେଥିରେ ତୁମ ମୁଣ୍ଡ ଖେଳେଇବାର କିଛି ନାହିଁ ! ହେଲା ?—

ସାଗର—ଲୋକେ କ'ଣ ମନେ କରିବେ ଅସୀତା ?

ଅସୀତା—ଲୋକଙ୍କୁ ସନ୍ତୁଷ୍ଟ କରିବାକୁ ସୀତା ଅଗ୍ନି ପରୀକ୍ଷା ଦେଇ-ଥିଲେ, ମାତ୍ର ଅସୀତା ସେ ଭଳି ବାଜେ ଲୋକଙ୍କୁ ସନ୍ତୁଷ୍ଟ କରିବାକୁ ପ୍ରସ୍ତୁତ ନୁହେଁ ! ନା··· ! ତୁମେ କ'ଣ ଭାବୁଚ ଅଚନୁ, ବିବାହ ନ କଲେ ଆମ ଜୀବନ ନଷ୍ଟ ହୋଇଯିବ ? ତୁମେ ଯାଅ, ହିଓଟି ଯାକ ବନ୍ଧୁ ବିବାହ କର, ମୁଁ ବରଂ ଯାଇବନ୍ଧୁ ଚନ୍ଦ୍ରୀମାନଙ୍କୁ ସଙ୍ଗୋଳି ଆସିବି । **Fools** ! (ଦୁହିଁଙ୍କ ମୁଣ୍ଡକୁ ନୁଆଇଁ ଜୋର କରି ବାଡ଼େଇ ଦେବା ସଙ୍ଗେ ସଙ୍ଗେ ଠୋ ଠୋ କରି ହସିଲେ । ଅଚନୁ ଓ ସାଗର ନିର୍ବାକ୍)

—ଉପ୍—

# ଦ୍ୱିତୀୟ ଅଙ୍କ

## —ପ୍ରଥମ ଦୃଶ୍ୟ—

[ ପୀତବାସ ବାବୁଙ୍କ ଘର । ପରଦା ଉଠିଲା ପରେ ଦେଖାଗଲା ଫାଇଲରେ ପୀତବାସ ବାବୁ କଣ ଲେଖୁଛନ୍ତି, ପାଖରେ ବସିଛନ୍ତି ଶଙ୍କରବାବୁ । ପ୍ଲେଟ ଥାଳିଆଟିରେ ପାନ ଦ'ଖଣ୍ଡ ଜୁଆ ହୋଇଛି । ]

ଶଙ୍କର – ସତରବର୍ଷର ଗୃହକଣ୍ଟ, ସେଥିପାଇଁ ଟିକଏ ମାୟା ହେଇ ଯାଇଚ, ନହେଲେ ମୁଁ explanation ଦେଇ ନ ଥାନ୍ତି । ମୋର ମନ ମତେ ଆଗ କାଇକି କଣଥାନ୍ତା । ହେଲେ, ସିଛଟାରେ ହାକମ ମତେ ଦୋଷୀ ସାବ୍ୟସ୍ତ କଲେ, ନାନାଦି କଟୁକଥା କହିଲେ । ସତର ବର୍ଷର ଗୃହକଣ୍ଟ, କହିଲେ ଭଲା, ମୋ ଇଜ୍ଜତ ଉପରେ ପଡ଼ିଲା କ ନାହିଁ ?

ପୀତ – (ଲେଖିସାରି) ନଅ । ଯାହା ଲେଖିଲି, ସେତିକ ଯଥେଷ୍ଟ ! ସେ ଯଦି ପ୍ରକୃତ ହାକମ ହେଇଥିବେ, ନ୍ୟାୟ ବିଚାରର ଦଣ୍ଡ ଯଦି ପ୍ରକୃତରେ ତାଙ୍କ ହାତରେ ଥିବ, ସେ କେବେହେଲେ ତୁମକୁ ଭୁଲ ବୁଝିବେ ନ ! ( ଶଙ୍କରବାବୁ କୈଫିୟତଟି ପଢ଼ୁଥିଲେ)

ଶଙ୍କର—ଠିକ୍ ହୋଇଛି । ସେ ଭଲ ବୁଝନ୍ତୁ ବା ମନ୍ଦ ବୁଝନ୍ତୁ, ଆମର ଆଉ ବେଶୀ କିଛି ଲେଖିବାର ନାହିଁ । ଅଧମେ ଗରିବ ହେଲୁ ବୋଲି ଆମର କ'ଣ ଇଜ୍ଜତ୍ ମହତ କିଛି ନାହିଁ ? ବୁଝିଲେ ଆଜ୍ଞା, ଅଭାବ ବୋଲି ସିନା ସମସ୍ତେ ଆମକୁ ସନ୍ଦେହ କରୁଚନ୍ତି, ନ ହେଲେ ଲକ୍ଷ କ'ଣ ସମସ୍ତେ ନଉଚନ୍ତି, ନା ସମସ୍ତଙ୍କର ସେ ସୁବିଧା ଅଛି !

ପୀତ—ସେ କଥା କାହିଁକି କହୁଚ ଶଙ୍କର ବାବୁ ! କି ଦୁଃଖରେ ଦରିଦ୍ର କରାନ କୁଳ ଯେ ବଞ୍ଚେ ସେ କଥା ଅନୁଭବ ଛଡ଼ା ଆଉ କିଏ ଜାଣିବ ! ମୁଁ ଯେତେ ବର୍ଷ ସରକାର ଘରେ ଗୁଳକରି କଲଣି, ପଞ୍ଚ ପଇସା ନବାକୁ ମନ କରିଥାନ୍ତି ଅଜି ଦୋଚାଲ କୋଠା ପିଟି ପାରିଥାନ୍ତି ! ଘଡ଼ିଟାଏ କି ସାଇକେଲଟାଏ ସକାଶେ ଝିଅ ବାହାଘର ଆଜି ଯାଏଁ ଯାଉ ନ ଥାନ୍ତା ! ହେଲେ...(ଦୀର୍ଘ ନିଶ୍ୱାସ ପକାଇ)

ଶଙ୍କର—ହଁ, ଭଲ କଥା ମନେ ପଡ଼ିଲା ଆଜ୍ଞା, ବାହାଘର କଥା ଫେର୍ କ'ଣ ହେଲା ? ସଞ୍ଜଗତି ମନ୍ଦ ପିଲା ନୁହେଁ, ଆପଣଙ୍କ ପରି ମୁରବୀଟିଏ ଆଖି ରଖିଥିଲେ...ସଞ୍ଜଗତି ବୁଦ୍ଧିମାନ୍, ମଣିଷ ହୋଇଯିବ !

ପୀତ—ହେଲେ ମୋ ଝିଅକୁ ତ ସେମାନେ ଗ୍ରହଣ ନାହାନ୍ତି ଶଙ୍କର ବାବୁ ! ସେମାନେ ଗୃହ୍ଣୁଁଚନ୍ତି ସୁନା, ସାଇକେଲ, ଓ୍ୱାଚ୍ ! ମୋ ଅବସ୍ଥା ତ ତୁମେ ଜାଣିଚ ଶଙ୍କର ବାବୁ, ଝିଅ ଜନ୍ମ କରିଚି ଯେତେବେଳେ...ଜବାବ୍ କରି ଠକି ତ ପାରିବି ନ !

ଶଙ୍କର—ଯାହା ହଉ ଆପଣ ସେ ବୋଝ ଉଠେଇ ଦିଅନ୍ତୁ । ବଡ଼ ବଡ଼ଆଙ୍କ କଥା ଅଲଗା, ଆମ ଗରିବ ଘରେ ଝିଅଟିଏ ଫୁଟିଲେ ବାଜିବ ! ସାଗର ବାବୁ ଆପଣଙ୍କ ଘରକୁ ଯା'ଆସ କରନ୍ତି

ବୋଲି କଚେରୀ ଭିତରେ ଲୋକେ କମିତି ଭୁଟ୍‌ଭାଟ୍ ହଉଛନ୍ତି ଶୁଣୁଛନ୍ତି ତ? ଏଗୁଡ଼ାକ ସତ୍ତାଶ କାନକୁ ଗଲେ···

ପୀତ—ଥାଉ ଶଙ୍କରବାବୁ ! ଏ ସବୁ କଥା ଆଜି ଥାଉ ! ସାଗର-ବାବୁଟିକୁ ସେମାନେ କେଉଁ ଚିହ୍ନି ନାହାନ୍ତି ! ହେଲେ ମୋର ତ ଆଉ ଚିହ୍ନିବାକୁ ବାକି ନାହିଁ ! ସେ ଦିନ ସେ ମୋର ଯାହା କରିଚନ୍ତି, ତାଙ୍କ ଋଣ ମୁଁ ସାତ ଜନ୍ମରେ ବି ସୁଝି ପାରିବି ନି ! ହେଲେ ଶଙ୍କର ବାବୁ ! ହାତ ପଣ ତାଙ୍କର ଉଣ୍ଡିଲା ନାହିଁ ! ପଥର ଦେବତା ମଣିଷର ସବୁ ଗୁହାରିକୁ କାନ ବୁଜି ଦେଲେ !

ଶଙ୍କର—ସେ ପଛ କଥା ମନେ ପକେଇ ଦୁଃଖ କରନ୍ତୁ ନାହିଁ ପୀତବାସ ବାବୁ ! ସେ ଗୋଟିଏ accident, ଜୀବନର ସେ ଗୋଟାଏ ଦୁର୍ଯୋଗ ! ମଣିଷ କେତେ ଆଶା କରେ, କେତେ କଳ୍ପନା ଜଳ୍ପନା କରେ; ହେଲେ ସବୁ ଯେମିତି ଓଲଟି ଯାଏ ! ଯାହାହଉ କେତେବେଳେ କୋଉ କଥା, ଆପଣ ଝିଅ ନମିତ୍ତଟି ଶେଷ କରିଦେଇ ବସନ୍ତୁ ! ତେଣିକି ଭାଗ୍ୟ !

ପୀତ—ସତ ଯେ, ମୁଁ ତ ସେମାନଙ୍କ ଜବାବ୍‌କୁ ପାରି ଉଠୁନି ! ତାଙ୍କର ବହୁତ ଦାବୀ ! ମୋର ଏତେ ବଳ କାହିଁ ? ତୁଳସୀ ପତ୍ର ପାଖଟିଏ ମୁଁ ଦେବି ଶଙ୍କର ବାବୁ ! ସେମାନଙ୍କୁ ତୁମେ କହିବ, ସୁରୁଚି ମୋର ଗୋଟିଏ ରତ୍ନ, ଯେ କୌଣସି ଅବସ୍ଥାରେ ମଧ୍ୟ ଘର ସେ ସମ୍ଭାଳି ନବ ! ଘର ଚଳେଇବାକୁ ଝିଅ ମୋର କେବେ ହେଲେ ପଛେଇବ ନାହିଁ ! ତାଙ୍କର ଯଦି ଭଲ ଝିଅଟିଏ ଲୋଡ଼ା ଥାଏ, ଭଲ ଘରଣୀଟିଏ ଦରକାର ଥାଏ, ମୋ ଘରେ ସମ୍ବନ୍ଧ କରନ୍ତୁ । ନହେଲେ ତଉଲ କରି ଟଙ୍କା ସୁନା ଦବା ମୋ ଶକ୍ତିର ବାହାରେ ! ହଉ, ଶଙ୍କରବାବୁ, ତୁମେ ଯାଅ ।

ଶଙ୍କର—ମୁଁ ଯେତେ ଶୀଘ୍ର ପାରେ ଡାକ୍ତରକୁ ଏଠିକି ଡାକି ଆଣିବି । ଶିକ୍ଷିତ ପିଲା, ସେ ନିଜେ ପଦ ଧରି ଯିବ ତାହେଲେ ବି ଅସୁବିଧା ଆଉ କିଛି ରହିବ ନାହିଁ । ହଉ ଆଜ୍ଞା, ମୁଁ ଆସୁଛି । ନମସ୍କାର !

(ଉଠିଲେ)

ପୀତ—ହଁ, ଆସ । (ହାତ ଉଠାଇଲେ । ଶଙ୍କର ବାବୁଙ୍କର ପ୍ରସ୍ଥାନ) ଭଗବାନ ! କ'ଣ ତୁମେ କଲ ? କ'ଣ କଲେ ତୁମେ ଆଉ ସନ୍ତୁଷ୍ଟ ହବ ! ସରଗ ଛୁଇଁ ପରି ପୁଅକୁ ମୋର ଶେଷ କରି ଦେଲ; ବାପ ହେଇ ଝିଅ ନାଁରେ ଶୁଣିବାକୁ ଦେଲ; ଆଉ କ'ଣ ତୁମର ଇଚ୍ଛା ! (ଭରି ଆବେଗରେ) ଜନ୍ମ ଜନ୍ମର କଳଙ୍କ ଧୋଇ ମତେ ମଣିଷ ଜନ୍ମ ଦେଇଥିଲ···ଏଇ କ'ଣ ମୋ ସୁକୃତର ପୁରସ୍କାର ! (ଆଖିରେ ଲୁହ । ବନୁ ଆସିଛି । ଅଦ୍ଭୁତ ଚେହେରା, ଦୁର୍ଘଟଣା ପରେ ସେ ଯେ କେବଳ ବଞ୍ଚି-ରହିଛି, ଆକାର ବନୁ ସେଇ ଖାଲି ରହିବାର ଏକ ଜୀବନ୍ତ ପ୍ରମାଣ । ଗୋଡ ଛୋଟା, ହାତ, ମୁହଁ ବିକଳାଙ୍ଗ, ବାଡ଼ିରେ ଭରାଦେଇ ଆସିଛି)

ବନୁ—ତୁମେ କାନ୍ଦୁଛ ବାପା !

ପୀତ—ବନୁ ! (ଜାବୁଡ଼ି ଧରିଲେ ଆବେଗରେ । ବନୁର ହାତବାଡ଼ି ଖସି ପଡ଼ିଲା; ପୀତବାସ ବାବୁ ଧରେଇ ଦେଲେ) ମୋ ହାତକୁ ତୁ ଯିବା ବାଡ଼ି ବଢ଼େଇ ଥାଉ ରେ ବନୁ ! ହେଲେ ମୁଁ ଆଜି ତୋ ହାତକୁ···ଉଃ···(ବାଷ୍ପାକୁଳ କଣ୍ଠରେ)

ବନୁ—ତୁମେ କାନ୍ଦ ନା ବାପା, ତମ ବନୁ ଯେ ତମରି ଆଗରେ ବଞ୍ଚି ଛୁଡା ହେଇଛି; ତୁମେ କାନ୍ଦନାହିଁ ବାପା !

ପୀତ—ବନୁ ! ଉଃ !

ବନୁ—ସାଗର ଭାଇ କହୁଥିଲେ ତୁମେ ଶୁଣିନ ବାପା, ଦଶ ଜଣରେ ଜଣେ କର ସେ ମଟରେ ଛୁଡ଼ା କଟେଇବେ !

ପୀତ—କାହା ଗୋଡ଼ରେ ଆଜ ଛୁଡ଼ା ହବୁଟିର ବନୁ, ତୋ' ଗୋଡ ଯେ ଭଗବାନ ଚେଷ୍ଟା କରିଦେଲେ !

ବନୁ—ବାପା, ତୁମେ ତ ସବୁଦିନେ କୁହ "ଈଶ୍ୱର ଯାହା କରନ୍ତି ସବୁ ମଙ୍ଗଳ ପାଇଁ !"

ପୀତ—( ମନ ତାଙ୍କର ଯେମିତି ବିଦ୍ରୋହୀ ହୋଇ ଉଠିଲା ) ମଙ୍ଗଳ ପାଇଁ ! ଈଶ୍ୱର ! ଭଣ୍ଡ ! ଏ ବିଶ୍ୱ-ବ୍ରହ୍ମାଣ୍ଡର ଶତ୍ରୁ ! ନିଷ୍ଠୁର; ହୃଦୟ-ହୀନ !···(ଗୃହଗଲେ)

ବନୁ—ବାପା ! (ଗୃହୁକୁ ଆସିବାର ଦେଖି) ଅପା ! ମୁଁ ସେ ମଟରେ ତଳେ ପଡ଼ି ମରି ଯାଇଥିଲେ ଭଲ ହୋଇ ଥାଆନ୍ତା, ନୁହେଁ ଟିଲା ଅପା ?

ଗୃହୁ—( ଧୀର ସ୍ୱରରେ ) ବନୁ ! ବଡ ମଣିଷଙ୍କ ଭଳିଆ ଖୁବ୍ ବଡ଼ କଥା ଏଥର କହିଲୁଣି ! ଯା—ଆଜ ତ କିଛି କାମ ନାହିଁ ବାପାଙ୍କ ସାଙ୍ଗରେ ଯୁକ୍ତି କରିବାକୁ ବାହାରି ପଡିଲୁ ।

ବନୁ—ଅପା, ଗୋଟେ କଥା ପଚାରିବି, ଚିଡ଼ିବୁ ନି ?

ଗୃହୁ—କ'ଣ ?—

ବନୁ—ଅପା, ତୁ ବାହାହେଇ ଗଲେ, ତୋ ଶାଶୁ ଘରକୁ ମୁଁ କ'ଣ ଏଇ ରୂପ ନେଇ ଯିବି ? ତୁ ମତେ ବନୁ ବୋଲି କୁଣ୍ଢେଇ ପକେଇବୁ ତ ଅପା !

ଗୃହୁ—ବନୁ ! (କୋହ ସମ୍ଭାଳି ନ ପାରି) ମୋ ଶାଶୁ ଘରକୁ ତତେ ଆଉ ଯିବାକୁ ହବ ନାହିଁରେ ବନୁ ! ତତେ ଛାଡ଼ି ମୁଁ ଏଠୁ କୁଆଡ଼େ ଯିବି ନି !

ବନ୍ଦୁ—ବାହା ହବୁ ନ ? ବାପା ବୋଉଙ୍କୁ ତୁ ବ ତା'ହେଲେ କନ୍ଦେଇବାକୁ ଠିକ୍ କଲୁଣି ! (ଅଳକା ଦେଖି ଆସିଲେ)

ଅଳକା—ଯାହା କପାଳରେ ବିଧାତା ସବୁଦିନେ କାନ୍ଦିବାକୁ ଲେଖିଛି, ନ କାନ୍ଦି ସେ ଆଉ କ'ଣ କରିବ ! ଆଶା ମୁହଁରେ ଫେର୍ ଇମିତି ପାହାର ପଡେ ! ଯୋଉ ଡାଳ ଧରିଲେ ସେ ଡାଳ ଭାଙ୍ଗିଲା—

ସ୍ୱରୂ—ବୋଉ ! ତତେ ପରା ମୁଁ କେତେଥର ମନା କରିଛି, ବନ୍ଦୁ ଆଗରେ ତୁ ଆଖିରୁ ଲୁହ ଗଡ଼େଇବୁ ନ ! ଅଚ୍ଛା କହିଲୁ ଭଲା, ଆମେ କାନ୍ଦିଲେ କି ମୁଣ୍ଡ ବାଡ଼େଇଲେ ବନ୍ଦୁ କ'ଣ ଆଉ ଭଲ ହୋଇଯିବ ନା ପରୀକ୍ଷା ଦବ ?

ବନ୍ଦୁ - ପରୀକ୍ଷା କାହିଁକି ଦେବି ନ ଅପା ? ସାଗର ଭାଇଙ୍କ କଥା ତୁ କ'ଣ ଶୁଣିନୁ ! ମୁଁ ଫେର୍ ଏବର୍ଷ ପରୀକ୍ଷା ଦେବି । ଦେଖିବୁ ରହ ଅପା, ମୁଁ ଭଲ ନମ୍ବର ରଖି ପାଶ କରିବି ।

ସ୍ୱରୂ—କେମିତି ପାଶ୍ କରିବୁ ମ ! ପାଠ ପଢ଼ା ଛାଡ଼ି ଖାଲି ବଡ ମଣିଷଙ୍କ ଭଳିଆ କଥା କହିଲେ କ'ଣ ଭଲ ନମ୍ବର ରହିବ, ନା ସାଗର ଭାଇ ତୋ' ସକାଶେ ପରୀକ୍ଷାଦେଇ ପାଶ୍ କରିବେ !

ବନ୍ଦୁ—ନାଇଁ ଅପା ! ପଢ଼ାପଢ଼ିରେ ମୁଁ କେବେ ହେଳା କରୁ ନ । ମୋର ସିନା ଗୋଡ଼ ଭାଙ୍ଗି ଯାଇଛି—ହେଲେ ମୋ ମନ ତ ଭାଙ୍ଗି ଯାଇ ନ ! ମୁଁ ପାଶ୍ ନ କରିବି କାହିଁକି ? ଦେଖିବୁ ରହ । (ପ୍ରସ୍ଥାନ)

ସ୍ୱରୂ – ବୋଉ ! ତତେ ମୋ ରାଣ, ତୁ ବନ୍ଦୁ ଆଗରେ ଆଉ ଦିନେ ଏମିତି କଥା କହିବୁ ନ । ପିଲା ଲୋକ, ତା ମନ ଭାଂଗି ଯିବ ନାଇଁ !

ଅଳକା—ହେଲେ, କ'ଣ ଆଉ ବାକି ରହିଲା ଯେ ?·········

ବୃଦ୍ଧ—କାହିଁକି ? ଗାଇ ବଣ୍ଠ ଆମର ପାଖରେ ଅଛି···ଏଇ କ'ଣ ବଡ଼ କଥା ନୁହେଁ ! ସେ ଯଦି · ···

ଅଳକା—ଚୁପ୍ ହ ବୃଦ୍ଧ, ଚୁପ୍ ହୋଇ ଯା, ସେ କଥା ତୁ କହ ନା । ଜ୍ୟେଷ୍ଠା ହଉ, କେମିତି ହଉ, ମୋ ଧନ ଏ ସଂସାରରେ ଗାଇ ବଣ୍ଠ ରହୁ । ହେଲେ ମା, ଆମେ ତ ବୁଢ଼ା ବୁଢ଼ୀ ହେଲୁଣି । ଆଜି ବୋଲି ଆଜି ନାହିଁ କି କାଲି ବୋଲି କାଲି ନାହିଁ— ତୁ ଟୋ ଶାଶୂ ଘରକୁ ଗୁଳାଗଲେ, ମୋ ବେଳୁଁହିଁର ଖବର କିଏ ବୁଝିବ ଲୋ ମା' ?—

ବୃଦ୍ଧ—ସେ କଥା ତୁ ଭାବନା କର ନା । ଶାଶୁଘର ? ମୋ ଘରଣାକୁ ମୁଁ ଆଣିନଇବ ନ, ବାଡ଼ାହୋଇ ଶାଶୁ ଘରକୁ ଯିବ ! ନାହିଁ, ବୋଉ ! ତତେ ମୋ ରାଣ, ମୋ ମୁଣ୍ଡ ଖାଇବୁ; ବାପକୁ କହ; ସେ ମୋ ବାହାଘର ନାଁ ଧରିବେ ନାହିଁ । ନାହିଁ ତ ମୁଁ ବିଷ ଖାଇଦେବ ।

ଅଳକା—ବୃଦ୍ଧ ! ପୁଅ, ଝିଅ ଦୋ'ଟି ଜନ୍ମ କରିଥିଲି କ'ଣ ଏମିତି ଦେଖିବ ଶୁଣିବ ବୋଲି ?

ବୃଦ୍ଧ—ଛି, ବୋଉ ! ତୁ ଖାଲି ଠାକୁରଙ୍କୁ ଡ଼ାକ; ସେ ଆମକୁ ବଳ ଦିଅନ୍ତୁ, ସାହସ ଦିଅନ୍ତୁ, ଶକ୍ତି ଦିଅନ୍ତୁ ! ଆମର ଆଉ କିଛି ଦରକାର ନାହିଁ । (ପ୍ରସ୍ଥାନ)

ଅଳକା—ଠାକୁର କିଏ ମା ? ଠାକୁର କେହି ନାହିଁ ! ଠାକୁର ଯଦି ଥାଆନ୍ତା, ଆମ ଗରିବଙ୍କ ଡ଼ାକ କଣ ସେ ଶୁଣନ୍ତା ନାହିଁ ! ଧର୍ମକର୍ମ, ପୁରାଣ, ପୋଥି ସବୁ ମିଛ ! ମିଛ ସବୁ; ମିଛ ! (ପ୍ରବେଶ କରିଲେ ପୀତବାସ ବାବୁ)

ପୀତ—ତୁମେ କାନ୍ଦୁଚ ବୃଦ୍ଧ ବୋଉ ! ଭଗବାନଙ୍କୁ ତୁମେ ଅଭିଶାପ ଦେଉଚ ? ଦିଅ, ଯେତେ ପାର ସେତେ ଅଭିଶାପ

ଦାଓ, ତେବେ ତା'ର କିଛି ହେବ ନାହିଁ ! କେତେ ନିନ୍ଦା, କେତେ କୁତ୍ସା, କେତେ ଅଭିଶାପ, ସବୁ ହଜମ କରି ତେବେ ବି ଯେ ଦୀନବନ୍ଧୁ ବୋଲି ଗର୍ବରେ ପତିତପାବନ ବାନା ଉଡ଼ାଉଛି; ତାକୁ ଲାଜ ସରମ କିଛି ନାହିଁ ଗୁରୁ ବୋଉ ! ପୃଥିବୀ ରସାତଳକୁ ଗଳିଗଲେ ବି ତା'ର ଟିକିଏ ହେଲେ ଶୋଚନା ନାହିଁ ! କାନ୍ଦ, ତୁମେ କାନ୍ଦ, ବଡ଼ ବୋଉ ! ହେଲେ ପଥର ମୁଁ, ମୁଁ ମୋଟେ କାନ୍ଦିବି ନାହିଁ। (କହୁଁ କହୁଁ କାନ୍ଦି ପକାଇଲେ)

—ପରଦା—

•••O•••

## —ଦ୍ୱିତୀୟ ଦୃଶ୍ୟ—

[ ଅଳିନ୍ଦ । ଡକ୍ଟର ଦାସ ହସି ହସି ବେଣୁ ଆସିଲେ, ପଛରେ ଆସୁଛି ଗୋବିନ୍ଦ । ]

ଡ଼: ଦାସ—ଅରେ ଗୋବିନ୍ଦ ! ସେଦିନ ମୁଁ ତତେ କହିଥିଲି ନା, ଆଗ ତୁ ପାଇବୁ !

ଗୋବିନ୍ଦ—କ'ଣ ବାବୁ ?

ଡ଼: ଦାସ—ଯା, ସେ ମାଳ୍ପିଆ ଖଣ୍ଡିକ ନେଇଆ । ଯା—(ଗୋବିନ୍ଦ ତରତର ହୋଇ ମାଳ୍ପିଆ ଆଣିଲା ) ହଁ, ସେଇଠି ବସିପଡ଼ ! ନେ, ଏଥିକୁ ହାତରେ ରଖିଥା—( ଦବାକୁ ଯାଇ ହାତ ମୁଠା ଫେରେଇ ନେଲେ ) ନା, ନା, ତୁ ହଜିଯିବୁ ପାଣି ଗୋଟାଏ ଗ୍ଲାସ୍ ନେଇ ଆ । ଆଜି ତୋର ଜନ୍ମଦିନ !

ଗୋବିନ୍ଦ—ମୋ ଜନ୍ମ ଦିନ ତାରିଖ ତ ମତେ ଜଣା ନାହିଁ ବାବୁ, ତୁମେ କେମିତି ଜାଣିଲ ?

ଡ଼:ଦାସ—ପାଣିଆଣ ! ( ଗୋବନ୍ଦର ପ୍ରସ୍ଥାନ ) ହାଃ; ହାଃ, ଗୋବନ୍ଦକୁ ନେଇ ମୋର ପ୍ରଥମ experiment ! ( ବସି ପଡ଼ିଲେ । ଗୋବନ୍ଦ ପାଣିଗ୍ଲାସଟିଏ ନେଇ ଆସିଛି ) ହଁ ।— ଗ୍ଲାସରୁ ପାଣି ଟିକଏ ପିଇ ଦେ ! ନେ, ଏ ମୋଦକ ପାଟିରେ ପକା । ( ଗୋବନ୍ଦର ତଥାକରଣ ) ହଁ, ଆଉ ଟିକଏ ପାଣି ପିଇ ଦେ ! ବେଶ୍, ଯା ! ଆଜି ତୋର ଜନ୍ମଦିନ—

ଗୋବନ୍ଦ—ଏ ମୋଦକରେ ଭାଙ୍ଗ ଫାଙ୍ଗ ତ ନାହିଁ ବାବୁ ?

ଡ଼:ଦାସ—ହତଭାଗା କି ଅଭଦ୍ର ହେଇଛି ! ହଇରେ ଗୋବନ୍ଦ, ତତେ ପଚ୍ଚଶରୁ ବେଶୀ ହବ ନା ?

ଗୋବନ୍ଦ—କେଜାଣି ବାବୁ, ମୋ ଜନ୍ମଦିନ ଆଉ ମୋ ବଅସ କଥା କିଏ ଜାଣିଛି !

ଡ଼:ଦାସ—ତତେ ଆଉ ହବ ନି । ଆଉ ରୋଗ ଶୋକ କିଛି ହବ ନି, ବୁଝିଲୁ ! ବଞ୍ଚିବାପାଇଁ ଖାଇବା ଚିନ୍ତା ତୋର ଗଲା ! ତତେ ମୁଁ ଅମୃତ ଲଡ଼ୁ ଖୁଆଇ ଦେଇଛି ! ହଁ—

ଗୋବନ୍ଦ—କ'ଣ କହୁଚ ବାବୁ ! ରୋଗ ଶୋକ ମତେ କିଛି ବାଧିବ ନାହିଁ ?

ଡ଼:ଦାସ—ଆଉ ତୋର ଭାବନା କିଛି ନାହିଁ । ଖାଲି ତୋରି ନୁହେଁରେ ଗୋବନ୍ଦ, ମୋ experiment ଯଦି ସଫଳ ହୁଏ, ଏ ମୋଦକ ପ୍ରକୃତରେ ଅମୃତ ଲଡ଼ୁର କାମ କରିବ ! ଦୀର୍ଘ ପଚିଶ ବର୍ଷର ସାଧନା ମୋର ଜୟଯୁକ୍ତ ହବ !

ଗୋବନ୍ଦ—ଭାରି ଭଲ ହବ ବାବୁ । ମତେ ଗଣ୍ଡାଏ ଲଡ଼ୁ ଦଅନ୍ତୁ । ମୁଁ ପୀତବାସ ବାବୁଙ୍କ ଘରେ ଦେଇ ଆସିବି । ବଡ଼ ଅବସ୍ଥା ହଉଚନ୍ତି ତାଙ୍କ ପିଲାମାନେ । ଭଦ୍ରଲୋକ ସେ···

ଡ଼ା: ଦାସ—ବକ୍ତୃତା ବନ୍ଦ କରି ରୋଷେଇବାସର ବନ୍ଦୋବସ୍ତ କର । ହତଭାଗା, ତୋ'ର ଭୋକ ଶୋଷ ସିନା ନାହିଁ, ହେଲେ ମୋର ଅଛି, ବୁଝିଲୁ !

ଗୋବିନ୍ଦ—ବାବୁ, ତମେ ବି ସେ ମୋଦକରୁ ଗଣ୍ଡାଏ ଖାଇଦିଅ, ତା'ହେଲେ ମତେ ଆଉ ଏ ବୁଢ଼ାଦିନେ ରୋଷେଇ ଘରକୁ ଯିବାକୁ ହୁଅନ୍ତା ନାହିଁ । ଚଣ୍ଡାଳ ପେଟ ମକାଟେ ସିନା ଏତେ ନାଟ ! ଭଲ କଥା ବାବୁ, ତମର ଏ ମୋଦକ ଯୁଗେ ଯୁଗେ ଥାଉ, ଖାଇବା ଦାଉ ଯାଉ ! ନ ହେଲେ ଧୋଇ, ମରୁଛି ଯୋଗୁ ବ୍ୟଞ୍ଜନ ଯୋଉ ମହଙ୍ଗା ହେଉଛି—

ଡ଼ା:ଦାସ—ଯା, ଅସୀତା ନାହିଁ ବୋଲି ତୁ ହତଭାଗା ଘ'ରେ ଚନ୍ନ ବି ଠିକ କରି ମିଶେଇ ପାରୁନୁ !

ଗୋବିନ୍ଦ—ମୋ ସାତ ପୁରୁଷରେ କେହୁ ଦୂର୍ବଷ ନ ଥିଲେ ବାବୁ ! ଏ ବୁଢ଼ା ଦିନକୁ ଗୋବିନ୍ଦ ଫେର୍ ତମର ପୂଷ୍ୟାଶ୍ରି ହେଲା ! ହଁ; କର୍ମରେ ଥିଲା, ଦଇବ ଦେଲା, ନ ହେଲେ ତମ ରାନ୍ଧିବା ଫେର୍ ମୁଁ ରାନ୍ଧନ୍ତି ! ବାବୁ ଏଥର ପୂଷ୍ୟାଶ୍ରିଟିଏ ରଖ

ଡା:ଦାସ—ଓହୋ, କଷ୍ଟ ଦେଖି ତରଳ ପଡ଼ୁଚ ! ଯା; କୁଣ୍ଡରେ ପାଣି ଭର୍ତ୍ତି କର । ମୁଁ ଆଜ ଅସୀତା, ଅତନୁ, ସାଗର ସମସ୍ତଙ୍କୁ ଡ଼କେଇ ପଠଉଚ । ଡ଼ାଇଭର ବନ୍ଧୁଟିକୁ ଛୁଟି ଦେଇନୁ ତ ?

ଗୋବିନ୍ଦ—ବିଚରା କହୁଥିଲା' ଘରେ ତା'ର ବେମାର । ବାବୁ ! ଆମ ଡ଼ାଇଭର ବିଚରାଟିକୁ ଆଗ ଗୋଟିଏ ମୋଦକ ଦେଇ ଦିଅ ! ତା' ପିଲାଏ ସେଥିରୁ ଫାଳେ, ଟେନାଏ ଖାଇ ଦିଅନ୍ତୁ

ଡ଼ା:ଦାସ—ଖବରଦାର୍ ଗୋବିନ୍ଦ ! ଏ ମୋଦକ କଥା ତୋ' ଛଡ଼ା ଆଉ ଯେମିତି କେହି ନ ଜାଣନ୍ତି । ତୁ ଖାଇଚୁ, କେମିତି କାମ

କରୁଚ ଆଗ ପରୀକ୍ଷା କରେଁ···ତାପରେ ସାଗରକୁ ମୁଁ ଜବାବ୍ ଦେବ !

ଗୋବନ୍ଦ – ହଉ ବାବୁ ! ଜାଣିଲେ ଲୋକ କଣ ଆଉ ଥୟ ପଡ଼ବେ ? ରଥ୍‌ଲେଇରେ ପାଦୁକ ନବା ପାଇଁ ଯେମିତି ଭିଡ଼ ହେଇଯାଇଥିଲ, ସେମିତି ଯାହା ଆମ ଦୁଆରେ ଲଗିଯିବ । ନାଇଁ ବାବୁ, ଯଦ କହବ 'ହଟବ ସେ ଡ୍ରାଇଭରକୁ, ନ ହେଲେ ଆଜ କାହାକୁ ନୁହେଁ । (ଗୃଲି ଯାଉଥିଲା)

ଡ଼: ଦାସ—ହତଭଗା ବୁଦ୍ଧିର ଯେମିତି ଗୋଟାଏ ଭଙ୍ଗା ହାଣ୍ଡି ! ହଇରେ ଗୋବନ୍ଦ, ଇଚେ ତ···

ଗୋବନ୍ଦ—(ଫେରି) ବଅସ କ'ଣ ଗଣିଚ ବାବୁ !

ଡ଼: ଦାସ—ଆରେ ନାଇଁ, ଅସୀତାକୁ ଦେଖି ଆସିଲୁ ? କେମିତି ଅଛି ?

ଗୋବନ୍ଦ—କେମିତି ଅଛି କଣ ବାବୁ ! ମା' ମୋର ସେଠି ଯନ୍ତ୍ରାରେ ପଡ଼ି ଏକଦମ୍ ଛଟପଟ !

ଡ଼: ଦାସ—ଅର୍ଥାତ୍ ?—

ଗୋବନ୍ଦ – ବଡ଼ କୁଟୁମ୍ବ ଘର, ମୁଁ ତମକୁ ସେତେବେଳେ କହୁଥିଲି; ତୁମେ ତ ମୋଟେ ଶୁଣିଲ ନାଇଁ ! ସାଗରବାବୁଟି ସାଙ୍ଗରେ ବାହାଘର କରିଥିଲେ କୋଉଠି ଭଲ ନ ହେଇ ଥାଆନ୍ତା କହିଲ ! ସାଗରବାବୁଙ୍କର ଯେମିତି କେହି ନାଇଁ, ମନ କରି ଥିଲେ ଏଇଠି ଘର ଜୋଇଁଆ ହେଇ ରହିଥାଆନ୍ତେ । ଅସୀତା ମା' ବି ତମ ପାଖରେ···

ଡ଼: ଦାସ – ହଉ, ତୋ କାମରେ ତୁ ଯା । ହତଭଗାକୁ ପଦେ ପଦେ କଥା ପଚାରିବ ସେ ଦଶ ପଦ କହିବ । ଅତି କଦର୍ଯ୍ୟ ସ୍ୱଭାବ ଏ ଲୋକଟାର ! ହୁଁ ! (ପ୍ରସ୍ଥାନ)

ଗୋବିନ୍ଦ—ହେଲେ ବାବୁଙ୍କ ଗୋବିନ୍ଦର ସାରକଥା ।

ଡ୍ରାଇଭର—(ବଇଘର ଦଗରୁ ଆସିକୁ) ବାତ କ୍ୟା ହୈ ଗୋବିନ୍ଦ ଭାଇ ? ମାଲିକ୍ ନେ ବଲ୍‌ଛ ସୁଣ୍‌ଯା

ଗୋବିନ୍ଦ—(ବାଧା ଦେଇ) ଆରେ ବାବୁ, ତୁଟଟା ପଟା କହିଲ ତୁ ଓଡ଼ିଆ ଶିଖ୍ ? ହାତ ହଲେଇ ମୁଣ୍ଡ ହଲେଇ ତୁତେ କଏ ଏତେ ବୁଝେଇବ କହିଲ ? ତୋ କଥା ତ ମୁଁ ବୁଝୁ ନାହିଁ କି ମୋ କଥା ତ ତୁ ବୁଝୁ ନାହୁଁ ! କି ଡ୍ରାଇଭର ତୁ ଆସିଛୁ ହୋଇଚୁ !

ଡ୍ରାଇଭର—ଗୋବିନ୍ଦ ଭାଇ !

ଗୋବିନ୍ଦ—ଚୁପ ! ଭାଇ ତ ଆଜ 'ଭାଇ' କଣ ? ଏ ରଙ୍କେଇ, ତୁ ବାବୁ ଓଡ଼ିଆ ବର୍ଣ୍ଣବୋଧକ ଖଣ୍ଡେ ଆଣି ପଢ଼ିଲୁ । ଓଡ଼ିଆ କଥା ବୋଲ ଶିଖ୍ ! ନ ହେଲେ ଏଠି ବଜାର ଭ୍ରୁକଷ ପଡ଼ିବ ନାହିଁ ।

ଡ୍ରାଇଭର—କ୍ୟା, ଓଡ଼ିଆ କ୍ୟା ଭାଷା ହୈ, ଔର ହିନ୍ଦି ଭାଷା ନେହିଁ ? ହିନ୍ଦି ବହୁତ ଭାଷା ହୈ ଗୋବିନ୍ଦ ଭାଇ, ତୁମ୍ ଥୋଡ଼ା ହିନ୍ଦି ପଢ଼ନା— ହାଁ !

ଗୋବିନ୍ଦ—କଥା ତ କହୁଚୁ, ସେମିତି ଶଗଡ଼ିଆଙ୍କ ଭଳିଆ ହୈ ହୈ କାହିଁକି ହଉଚୁ ? (ଅଭିନୟ କରି) ଆରେ, ମୋଦକ, ମୋଦକ ଖାଏଗା ? –

ଡ୍ରାଇଭର—ମୋଦକ୍ ?

ଗୋବିନ୍ଦ—ହିଁ, ଲଡ୍ଡୁ, ଲଡ୍ଡୁ ! (ଅଭିନୟ କରି) ଖାଇବୁ ?

ଡ୍ରାଇଭର—ହାଁ ଭାୟା, ମିଠାଇ ଖିଲାଓ ! ଜରୁର ଖିଲାଓ—

ଗୋବିନ୍ଦ—ରହ ବାପା, ଯେତେବେଳେ ଖିଲେଇବ ଖିଲେଇବ । ବାବୁ କୁଆଡ଼େ ଗଲେ ବାହାରି—ମୁଁ ଆଗ ଚାଲିସେ କେଉଁଠି

ଅଛୁ ! ଆରେ, ଦେଖା ଶୋଷା କୁଛ୍ ରହଙ୍ଗା ନାହିଁ ହୈ···
ଗୁଲ୍‌ଯାଗା ହୈ···ବୁଝିଲୁ ?

ଡ୍ରାଇଭର—ଦେଖା ଶୋଷା ଗୁଲ୍‌ଯାଗା କ୍ୟା ହୋବ ବାପୁ ?
ହାମକୋ ଥୋଡ଼ା ସମ୍‌ଝାନା –

ଗୋବନ୍ଦ—ହେଇଟି ତା’ କଥାକୁ ଶୁଣ ! ଆରେ ଏଇଟା ଇମିତ
କ’ଣ କହୁଚ ! କଛୁ ବୁଝୁନ ! ଓଃ – ହିନ୍ଦ କଥା ଗୁଡ଼ା କ
ହଚକଟିଆ ! ଆମେ ଭାଇ କହିଲେ ତାଙ୍କର ବାପୁ ! ରାମକୃଷ୍ଣ !

ଡ୍ରାଇଭର—ଗୁସ୍‌ସାମତ୍ କରନା···ଗୋବନ୍ଦ ବାପୁ !

ଗୋବନ୍ଦ—ପଳା, ପଳା, ଲଡ଼ୁ ଫଡ଼ୁ କଛୁ ନାହିଁ । ଝାଡ଼ୁଖିଆ
କରମ ଯାହାର; ସେ କୋଉଠୁ ଅମୃତ ଲଡ଼ୁ ଖାଇବ ? ପଳା—
( ରାଗରେ ପ୍ରସ୍ଥାନ – କଛୁ ବୁଝି ନ ପାରି ରଣଜିତ୍ ହତଭମ୍ବ
ଅନେଇଚ କାହା ହୋଇ)

—ପରଦା—

---

## —ତୃତୀୟ ଦୃଶ୍ୟ—

ଅଘୋର ବାବୁଙ୍କ ଘର । ପରଦା ଉଠିଲା ପରେ ଦେଖାଗଲା ସୁଭଦ୍ରାଙ୍ଗୀର ଜନ୍ମ ଦିନ ଉପଲକ୍ଷରେ ସୁଭଦ୍ରା ଓ ତା'ର ସାଥି ଝିଅମାନେ ନୃତ୍ୟ ଗୀତର ବ୍ୟବସ୍ଥା କରିଛନ୍ତି । ]

### –ଶ୍ୟାମାଙ୍ଗୀ ଓ ସୁଭଦ୍ରାଙ୍ଗୀର ନୃତ୍ୟ ଓ ଗୀତ–

ଗ୍ରୀଷ୍ମ ଆସିଲାରେ ମହୀରେ—
ତପ୍ତ ଝଞ୍ଜା ବାଆ ଜନ ମନ ଧାରେ ।
ବନ ତରୁ କୋଳେ, ବିହଗ ଆକୁଳେ...
ପରାଣ ପିୟାସାରେ ଭଲେ ମାରିବେ;
ମନ୍ଦିରେ ମନ୍ଦିରେ ନିଦାଘ ଭାବନା—
ରାଜବଧୂ କହେ ପ୍ରାଣ ପ୍ରିୟରେ;
"ଥିଲେ ଅନୁକମ୍ପା, ଦିଅ ସୁନା ଚମ୍ପା"
କୁମାର ଶୁଣି ହସି ନଏ ମେଲାଣି ।
ପକ୍ଷୀରାଜ ଚଢ଼ି ଦୂର ଦେଶ ଯାଏ
ରାଜବଧୂ ଝୁରେ ପରାଣ-ପ୍ରିୟରେ । ୧ ।
ବରଷା ଦେଲା ଦେଖା, ବିଜୁଳିର ଚମକେ—
ରୁମୁଝୁମୁ ରୁମୁଝୁମୁ ଝର ଝର ବାରି ଝରେ
ବିରହିଣୀ ରାଜବଧୂ ମନେ ମନେ ଝୁରି ମରେ,
କପାଳର ଗୋରଚନା ପୋଛେ ଆଖି କଜଳରେ
ଛାତି ସାରି ଚମକେ !

ସୁନନଙ୍କ-ଗୀତ ବି ଶୁଣି ନପାରି ଶୋଉଥିଲୁ ।

ସୁଭଦ୍ରା—ଦେଖିଲ, ମାଉସୀ ! ଅସୀତା ଅପା କଥାକୁ ଦେଖିଲ ଟି ! ଯାହାଙ୍କ ପାଇଁ ଆସୁଛି ବୋଲି କହି କୁଆଡ଼େ ଗଲେ ସେ ତାଙ୍କର ଦେଖା ଦର୍ଶନ ନାହିଁ ! ଆଜି ଅତନୁ ଭାଇ ଏ· ଇମିତି ଯଲାକ, ଚଳିଣ ଅସିବାକୁ କହିଥିଲେ ବୋଲି ଜାଣି ଜାଣି ଅଳ ଡେରି କଲେ !

ଯମୁନା—କଡ଼େଇ କଥା; ହାତରୁ କାମ ନ ଛାଡ଼ିଲା ଯାଏ ସେ କ'ଣ ଆସିବ ! ଆଉ କୋଉ କାମ ନ ହଉ, ଘଣ୍ଟକେ ଘରକାମରେ ହାତ ଦେଲା ନାହିଁ । ଆଲୋ ବୋହୂ ! ପିଲାମାନଙ୍କୁ ନେଇ ଯା, ସେମାନେ ଖାଇ ଦିଅନ୍ତୁ ।

ଶ୍ୟାମାଙ୍ଗୀ—ହଁ, ବୋଉ, ଯାଉଛି । ଆଲୋ ମେନ୍ତ, ଶାନ୍ତି, କନକ, ତମେ ସବୁ ଖାଇବ ଟି, ଚାଲ । ସୁଭା, ତମେ ସବୁ ଦେ, ଘଟକୁ ଚାଲ, ମୁଁ ଯାଉଛି ।

ସୁଭଦ୍ରା—ହଁ, ଆସ । (ଝିଅମାନଙ୍କୁ ନେଇ ପ୍ରସ୍ଥାନ)

ଶ୍ୟାମାଙ୍ଗୀ—ଏଇଟା କିନ୍ତୁ ଭଲ କଥା ନୁହେଁ ବୋଉ ! ଘରେ ଅଳ ଗହଳ ଚହଳ ଲାଗିଛି; ନ ଯାଇଥିଲେ କ'ଣ ଚଳି ନ ଥାନ୍ତା ? ଆମ ମନ ଭିତରେ କିଛି ନ ଥିଲେ ବି ଲୋକେ କଣ କହିବେ ? ଯେତେହେଲେ ଘରର ବୋହୂ; ସାଗରବାବୁଙ୍କ ସଙ୍ଗରେ ଯେତେବେଳେ ସେତେବେଳେ କୁଆଡ଼େ ଯିବାଟା......

ଯମୁନା—ଆଚ୍ଛା, ସେ ଆସୁ ମୁଁ ତାକୁ କହିବି ।

ଶ୍ୟାମାଙ୍ଗୀ—ଆମେ ଲୋକଙ୍କୁ କହିବାକୁ ସୁଯୋଗ ଦବା କାହିଁକି ଯେ ?

ଯମୁନା—ତୁ ଠିକ୍ କଥା କହୁଛୁ, ମା ! ଯେତେହେଲେ ଘରର ବୋହୂ ! ଦାଣ୍ଡକୁ ଏକଥା ବଡ଼ ଖରାପ ଦିଶିବ ! ନା, ତୁ ଚାଲ, ସେ ଆସିଲେ ମୁଁ ତାକୁ ତାଗିଦ୍ କରିଦେବି ।

( ଯମୁନା ଓ ଶ୍ୟାମାଙ୍ଗୀଙ୍କର ପ୍ରସ୍ଥାନ ।
କିଛୁକ୍ଷଣ ପରେ ସୁଭଦ୍ରାଙ୍ଗୀ ଫେରି ଆସି ଡାଣ୍ଡିଆଡ଼େ ଯିବାକୁ ବାହାରିଲେ । ଫେରିଲାବେଳକୁ ଅଘୋରଙ୍କୁ ଭେଟିଲେ—ଖିଆଶାଳାରୁ ସିଧା ଆସିଚନ୍ତି ସେ)

ଅଘୋର— ଛନଛନ ହୋଇ କାହାର ପ୍ରତୀକ୍ଷାରେ ରହିଛ ସୁଭଦ୍ରାଙ୍ଗୀ ?

ସୁଭଦ୍ରା— କ'ଣ କହୁଚନ୍ତି ସାର୍ ?...

ଅଘୋର—ଏ, ହେଃ - ପୁଣି ସେଇ ସାର୍ ସମ୍ବୋଧନ ? ଅଭ୍ୟାସଟା ମୋତେ ଛାଡ଼ି ପାରୁ ନ ଦେଖୁଚ ! ବାକ ସାବଧାନ ସୁଭଦ୍ରାଙ୍ଗୀ, (ନାଟକୀୟ ଭଙ୍ଗୀରେ) ତୁମ୍ଭେ ପତି-ଗୃହରେ ଆମ୍ଭଙ୍କୁ ଯଦି ଭୁଲରେ 'ସାର୍' କିମ୍ବା ସେଇଭଳି କିଛି ସମ୍ବୋଧନ କରି ଡାକିଲେ କିନ୍ତୁ କଥାଟା ଅନ୍ୟ ରକମ ହୋଇଯିବ ! ମାନେ ଲୋକେ idea କରିବେ···

ସୁଭଦ୍ରା—ହଜ, ଆଜ୍ଞା ।

ଅଘୋର—ମୁଁ କିନ୍ତୁ ସହଜରେ ଛାଡ଼ୁନି ସୁଭଦ୍ରାଙ୍ଗୀ ! ଖିଆଶାଳାରେ ନାନା ଧନ୍ଦାରେ ବ୍ୟସ୍ତ ରହି କିଛି ଉପଭୋଗ କରି ପାରିଲି ନାହିଁ ! ମୋ ପାଇଁ ଗୋଟିଏ ସ୍ପେଶିଆଲ୍ ହଜ !

ସୁଭଦ୍ରା—ମାନେ ?—

ଅଘୋର— ଓଢ଼ଣୀ ନୃତ୍ୟ ! ସଚରାଚର ତୁମେ ଯୋଉ ନାଚ ନାଚୁଚ, ତାକୁ ଅନ୍ୟ ଦେଶକାଳପାତ୍ର ଦୃଷ୍ଟିକୋଣରେ ରଖ ! ମାନେ···ସଫେଦ୍ "ବଗୁଲ୍‌ଚର ପଗଡ଼ି ପରି ସାଦା" ସଫେଦ୍ ଓଢ଼ଣୀ ହୋଇଥିବ, ମୋ ସାମ୍ନାରେ ନୁହେଁ, (ଏତିକିବେଳେ ଶ୍ୟାମାଙ୍ଗୀ ଫେରିଲେ ) ତୁମ ସ୍ୱାମୀଙ୍କ ସାମ୍ନାରେ ପକେଇବ ! କିନ୍ତୁ ମୋ ପାଇଁ ମାତ୍ର ଖଣ୍ଡିଏ ଓଢ଼ଣୀ ! ନାଚିଁ କରନା

ସୁଭଦ୍ରାଙ୍ଗୀ, ଏ ତୁମ ସାର୍‌ଙ୍କ ଅନୁରୋଧ !

ସୁଭଦ୍ରା—ଅଘୋର ଭାଇ, ତୁମେ ଯେ ଗୋଟିଏ କ'ଣ···

ଅଘୋର—ହାସ୍ୟ-ରସିକ, କଳାନୁରାଗୀ, ଗୁଣଗ୍ରାହୀ ତୁମର ଭଗ୍ନୀପତି ଶ୍ରୀ···ଶ୍ରୀ···

ସୁଭଦ୍ରା–ଅପ୍ରା, ତୁ ବି ହସୁଚୁ ? ହସ, ହସୁଥାଅ ହେଃ-ହେଃ (ସୁଭଦ୍ରା ଖତେଇ ହୋଇ ପ୍ରସ୍ଥାନ କଲେ)

ଶ୍ୟାମାଙ୍ଗୀ—ଆଚ୍ଛା, ଗୋଟାଏ କଥାର ଜବାବ ଦେବ ! ତୁମେ ମଣିଷ ନା ମାଙ୍କଡ଼ ? କଥା ତ କୁହ, ଖତେଇହେଲା ଭଳିଆ ମୁହଁକୁ କର କାହିଁକି !

ଅଘୋର—ଏ କଥା ତୁମେ ମତେ ପଚାରୁଚ ? (ପ୍ରାଚୀରଆଡ଼କୁ ବୁଲି ପଡ଼ି) ନା, ମାଙ୍କଡ-ନାମ ଧାରୀ ଜୀବ ତ ମୋ ବ୍ୟତୀତ ଏଠି ଆଉ କେହି ନାହିଁ ! ବାଃ, ପତି-ଭକ୍ତି ତ ତୁମର high class ଶ୍ୟାମା ! ବାଃ—ଅଧମର ଏ ଜନ୍ମ ସାର୍ଥକ !

ଶ୍ୟାମାଙ୍ଗୀ—ନିର୍ଲଜ !

ଅଘୋର—କିଏ–ମୁଁ ?

ଶ୍ୟାମାଙ୍ଗୀ–ହଁ, ତୁମେ, ତୁମେ ! ଲଜ୍ଜା ଥିଲେ ତୁମେ ଏ କଥା ବରଦାସ୍ତ କରନ୍ତ ! ଆଚ୍ଛା, ମତେ କହିବ ଟି, ସେ ସାଗରବାବୁଟି ତୁମର କ'ଣ ହୁଅନ୍ତି ?

ଅଘୋର—(ନୀରବ)

ଶ୍ୟାମାଙ୍ଗୀ—ଯାହା ବି ହୁଅନ୍ତୁ, ଅସୀତା ସାଙ୍ଗରେ ତାଙ୍କର ଏ ଅବାଧ ମିଳାମିଶା···ବୋଉ କଣ ଘବୁଚନ୍ତି ଜାଣେ ନା, ମତେ କିନ୍ତୁ ଭାରି କଦର୍ଯ୍ୟ ଲାଗୁଚି ! ଦେଖ, ଆଜ ସୁଭାର ଜନ୍ମଦିନ; କିଛି ନ ହେଲେ ବି ଆଉ ପାଞ୍ଚୋଟି ଝିଅ ଆମ ଘରକୁ ଆସିଚନ୍ତି, ସେମାନେ ସବୁ କ'ଣ ମନେ କରିବେ ?

ଅଘୋର—ମତେ କ'ଣ କରିବାକୁ କହୁଚ ସେ ?—

ଶ୍ୟାମାଙ୍ଗୀ—ସାଗରକୁ ଆମ ସୁଭଦ୍ରାଟି ସାଙ୍ଗରେ ବାନ୍ଧିଦିଅ । ତାହା-ହେଲେ ଅନ୍ତତଃ ବଦ୍‌ନାମର ଭୟ ଆଉ ନ ଥିବ !

ଅଘୋର—ସାଗରେ ଆଉ ସୁଭଦ୍ରା ! ନା, ସାଗର ବଜ ହେଲା ଭଲଆ ଲାଗୁ ନା !

ଶ୍ୟାମାଙ୍ଗୀ—କାହିଁକି, ସୁଭଦ୍ରାଟି କ'ଣ ଭଲ ଝିଅ ନୁହେଁ ?

ଅଘୋର—ତମ ଆଖିକୁ ଭଲ ଲାଗିପାରେ ସେ ମୋ ଆଖିକୁ ଶାସ୍ତ୍ରପୁ ଭଲ ଲାଗିବ—ଆମ ବୁଢ଼ୀଙ୍କର ନଥିର ଦାମଟା ତ୍ରିଶପୁ ଦୃଷ୍ଟିରୁ ଧରି ନଅ, ଏଇଟା ସମ୍ଭବ ! ହେଲେ ସୁଭଦ୍ରାଙ୍କ ଦେଇ ସମସ୍ତଙ୍କୁ Evening-in-Paris ଭଳି ବାସିବେ ଇଏ କୋଉ ସୁଖ ?

ଶ୍ୟାମାଙ୍ଗୀ—ତୁମେ ନିତାନ୍ତ ନିର୍ବୋଧ !!

ଅଘୋର—ନିତାନ୍ତ, ନିତାନ୍ତ ! ମାଙ୍କଡ଼ ଗୁଡ଼ାକ ନିର୍ବୋଧ ନ ହୋଇଥିଲେ, ଚଡ଼େଇ ବସା ବାନ୍ଧିଲେ; ଏଗୁଡ଼ାକ ହାତଗୋଡ଼ ଥାଇ ବର୍ଷାରେ ଦୁମ୍ ଦୁମ ମାଡ ସହୁଥାନ୍ତେ !

ଶ୍ୟାମାଙ୍ଗୀ—ତାହେଲେ ତୁମେ କ'ଣ କହୁଚ ଏଇ ଅଭିନୟ ସବୁଦିନ ଚାଲିଥିବ, ଆଉ ଆଖି କାନ ବନ୍ଦ କରି ନିର୍ବୋଧ ଦର୍ଶକ ଭଳି ଆମେ ସବୁ ଚୁପ ହୋଇ ବସିଥିବା ? ଯେଉଁବେଳେ ଅଂଶୀଦାର ନିତାନ୍ତ ରହିବାର କଥା, ଠିକ୍ ସେତିକିବେଳେ ସାଗରବାବୁଙ୍କ ସାଙ୍ଗରେ······

ଅଘୋର—ଶ୍ୟାମା !

ଶ୍ୟାମାଙ୍ଗୀ—କ'ଣ ? ଖୁବ ଖୁସି ଲାଗୁଚ, ନା ? ତମର ଆଉ ଇଜ୍ଜତ ମହତ କିଛି ନାହିଁ ନା ! ତୁମେ ନିଶ୍ଚିନ୍ତ ହୋଇ ବସ; ମୁଁ ଆଜ ସାଗରକୁ ଖୋଲାଖୋଲି ପଚାରିବି ।

ଅଘୋର—ଦେଖ, ଯାହା ତୁମେ କରୁଚ କର, କିନ୍ତୁ ସାବଧାନ !

ଅତନୁ ମନରେ ଆଘାତ ଦେଲା ଭଳି କୌଣସି କାମ କର ନା ! ତାହେଲେ ଏ ଘରର ସୁଖ ଶାନ୍ତି ସବୁ ଦିନ ପାଇଁ ନଷ୍ଟ ହୋଇଯିବ ! (ପ୍ରସ୍ଥାନ)

ଶ୍ୟାମାଙ୍ଗୀ—ମୁଁ ବୁଝିପାରେ ନା serious କଥାଟାକୁ ତୁମେ ଏତେ ହାଲ୍‌କା ଭାବରେ ନଅ କିମିତି ! (ଠିକ୍ ଏତିକବେଳେ ଅସୀତା ଓ ସାଗର ବାହାରୁ ଆସିଛନ୍ତି) ଓ, ଅସୀତା ! ଆସିଲୁ ?

ଅସୀତା—(ସହଜ ସ୍ମିତ ଭଙ୍ଗୀରେ) ହଁ, ଅଜାଙ୍କ ପାଖରେ ଟିକିଏ ଡେରି ହୋଇଗଲା ! ବେଶୀ ଡେରି ହୋଇନି ବୋଧହୁଏ ଅପା ?

ଶ୍ୟାମାଙ୍ଗୀ—ନା, ଭିତରେ ଶାନ୍ତି, କନକ, ମେନୁ ତତେ ଜଗି ବସିଛନ୍ତି, ଯା । ଅଜାଙ୍କୁ ତ ଦେଖି ଗୁହ୍ମିଁ ଆସିଲୁ···ଏବେ ସମସ୍ତଙ୍କର ଖାଇବା ଗବର ଟିକେ ବୁଝ୍ ।

ଅସୀତା—ତୁମେ ବସ ସାଗର, ତମର ଆଜି ଏଠି ନିମନ୍ତ୍ରଣ ! ମୁଁ ତୁମ ପରମ ବନ୍ଧୁଙ୍କୁ ଏଠିକି ପଠେଇ ଦଉଛି ! (ପ୍ରସ୍ଥାନ)

ସାଗର—ଅତନୁ ଫେରିଚି ନୂଆବୋଉ ?

ଶ୍ୟାମାଙ୍ଗୀ—ନା, ଅରେ, ଯାଉଚ କୁଆଡେ ? ବସ ।

ସାଗର—ନା, ନୂଆବୋଉ ! ଜରୁରୀ କାମରେ ଯାଉଚି । କାଲି ଆସିଲେ ବରଂ···

ଶ୍ୟାମାଙ୍ଗୀ—ସାଗରବାବୁ ! (ଶାସନ ଭଙ୍ଗୀରେ)

ସାଗର—ଭଲ । (ବସିଲେ)

ଶ୍ୟାମାଙ୍ଗୀ—ତୁମେ ଚାଲିଗଲେ ସୁଭା ମନ କଷ୍ଟ କରିବ ! ତା'ର ଜନ୍ମଦିନର ନିମନ୍ତ୍ରଣ···

ସାଗର—ମୋର ତ ଏ ଘରେ ସବୁଦିନେ ନିମନ୍ତ୍ରଣ ! କେବେ ନ ଖାଇଚି କହିଲ ! ହୋଟେଲ୍‌ରେ ତ ଅଧେ ଦିନ ମୋର ମିଲ୍ ବନ୍ଦ !

ଶ୍ୟାମାଙ୍ଗୀ—ଆଚ୍ଛା ସାଗର ବାବୁ, ଆମ ସୁଭଦ୍ରି ବିଷୟରେ ତମର ଧାରଣା କ'ଣ ! ସୁଭ କ'ଣ ଭଲ ଝିଅଟିଏ ନୁହେଁ ?

ସାଗର—ଦେଖ ନୂଆବୋଉ, ହଠାତ୍ ମନେ ଏ ପ୍ରଶ୍ନ ?—

ଶ୍ୟାମାଙ୍ଗୀ - କୁହ ନା – ।

ସାଗର—(ହସି) ନୂଆବୋଉ, ତୁମେ ମୋ ସହିତ ସମ୍ବନ୍ଧ କରିବ ବୋଲି ମନେ କରୁଚ ନା କ'ଣ ? ନ ହେଲେ ଯଦି ଅନ୍ୟ ଇଚ୍ଛା ଥାଏ ତା'ହେଲେ ମୁଁ ବରଂ...ଗୋଟିଏ ବରପାତ୍ର ଯୋଗାଡ଼ କରି ରଖିଲି !

ଶ୍ୟାମାଙ୍ଗୀ—ମୁଁ ଯଦି ତୁମରି ପ୍ରଶ୍ନ ଉଠାଏ ସାଗର ବାବୁ !

ସାଗର—ଭଉଣୀଟିକୁ ଭିକାରୁଣୀ କରିବ କାଇଁକି ନୂଆବୋଉ ! ସାଗର ରତ୍ନଗର୍ଭା, ହେଲେ ଏ ସାଗର ଶୂନ୍ୟଗର୍ଭ ! ହଁ ନୂଆବୋଉ, ଶୂନ୍ୟଗର୍ଭ ! କିଛି ନାହିଁ । ଜଣେ ସାଧାରଣ ବରପାତ୍ରର ଯେତିକି ଯୋଗ୍ୟତା ନିହାତି ଦରକାର, ସେତକ ବି ମୋର ନାହିଁ ! ବିଶ୍ୱାସ କର ନୂଆବୋଉ, ସାଗର ନିତାନ୍ତ ଦରିଦ୍ର ! ପ୍ରାଇଭେଟ୍ ଫାର୍ମ୍ରେ ସାଧାରଣ ଖଣ୍ଡିଏ କିରାଣି ବ୍ୟତୀତ ତା'ର ଆଉ ସମ୍ବଳ କିଛି ନାହିଁ !

ଶ୍ୟାମାଙ୍ଗୀ—ଏକଥା କହି ତୁମେ ଆପଣାର ପୌରୁଷ ଉପରେ ଆଞ୍ଚ ଆଣୁଚ ସାଗର ବାବୁ ! ତୁମେ ପୁରୁଷ, ଦିନେ ନା ଦିନେ ବିବାହ କରିବାର ଦରକାର ପଡ଼ିବ ନିଶ୍ଚୟ !

ସାଗର—(ହସି) ବିବାହ କରିବାର ଥିଲେ ବହୁ ପୂର୍ବରୁ କରିଥାନ୍ତି ନୂଆବୋଉ, ଆଉ ହୁଏତ ଏଇ ଅସୀତାକୁଇ' ବିବାହ କରି ପାରିଥାନ୍ତି ! ସେ କଥା ତୁମେ ବୁଝି ପାରିବ ନି—

ଶ୍ୟାମାଙ୍ଗୀ—ସବୁ ମୁଁ ବୁଝୁଚି ସାଗର ବାବୁ ! (ଅଭିମାନ ଓ କ୍ରୋଧ-ମିଶା କଣ୍ଠରେ) ବିବାହର ପ୍ରୟୋଜନ ମଧ୍ୟ ଅଛି ନାହିଁ ! ମୁଁ ଜାଣେ ସବୁ !

ସାଗର – ନୂଆଟବାଉ ! (ଆହତ କଣ୍ଠସ୍ୱର)

ଶ୍ୟାମାଙ୍ଗୀ—ଧନ୍ୟବାଦ ! ସୁଭ୍ରା ପାଇଁ ବରପାତ୍ର ଖୋଜିବାର ଦରକାର ମଧ୍ୟ ନାହିଁ !

ସାଗର--ନୂଆବୋଉ ! ( କିଛି ସମୟ ପାଇଁ କ'ଣ ସେମିତି ଭାବି ଧୀରେ ଧୀରେ କକ୍ଷ ଛାଡ଼ି ଚାଲି ଯାଉଥିଲେ )

ସୁଭଦ୍ରା—(ଭିତରୁ ଆସିଲେ) ସେ କ'ଣ, ଆପଣ ଚାଲି ଯାଉଚନ୍ତି ଯେ ? ଆସନ୍ତୁ, ଭିତରେ ସମସ୍ତେ ଆପଣଙ୍କ ଅପେକ୍ଷାରେ ଅଛନ୍ତି—ଅସୀତା ଅପା ମତେ ପଠେଇଲେ ଆପଣଙ୍କୁ ଡାକି ନବାକୁ !

ସାଗର—ପେଟ ପୂରି ଯାଇଚି ସୁଭ୍ରା, ଅସୀତା ଅପାଙ୍କୁ କହିବ ଆଉ ଖାଇବା ଦରକାର ପଡ଼ିବ ନାହିଁ !

ସୁଭଦ୍ରା—ଏଇଟା କିନ୍ତୁ ଅନ୍ୟାୟ ସାଗର ବାବୁ, ଆପଣମାନଙ୍କ ପାଇଁ ଏ ନାଚ ଗୀତର ଆୟୋଜନ, ଖିଆପିଆର ବ୍ୟବସ୍ଥା; କିନ୍ତୁ ଆପଣ, ମାନେ ଦୁଇଟି ଯାକ ବନ୍ଧୁ କି ପ୍ରକାର ଭଦ୍ରଲୋକ କହିଲେ ? ତାଙ୍କର ଦେଖା ନାହିଁ; ଆପଣ ଚାଲି ଯାଉଚନ୍ତି ।

ସାଗର—ଆଜିକି ପାଇଁ ଚାଲି ଯାଉଚି ସୁଭ୍ରା, ନ ହେଲେ ଯୋଉ ପରିବାର ସହିତ ମୋର ବନ୍ଧୁ ଜୀବନର ଘନିଷ୍ଠ ସମ୍ପର୍କ ସେଠି ନିମନ୍ତ୍ରଣର ପ୍ରଶ୍ନ ଉଠୁନି ! ଯୋଉ ଘରେ ସାଗର ପାଇଁ ଟିକିଏ ମମତା ଅଛି । ସେଠି ସାଗର ସବୁବେଳେ ରହିଛି । ଲୌକିକତାର ପ୍ରୟୋଜନ ନାହିଁ ! (ପ୍ରସ୍ଥାନ)

ସୁଭଦ୍ରା—ସାଗର ବାବୁ ! ସାଗର ବାବୁ ! ଆରେ, ସତକୁ ସତ ଚାଲିଗଲେ; ଦେଖିଲୁ ଅପା ?

ଶ୍ୟାମାଙ୍ଗୀ—ହଁ, ଦେଖିଲି ! ଜଣେ ଅନୁରୋଧ ଉପରେ ଅନୁରୋଧ ଜଣାଉ ଚାଲିଚି, ଅନ୍ୟ ଜଣେ ପ୍ରତ୍ୟାଖାନ କରିବାରେ ବ୍ୟସ୍ତ ! ଏ ପ୍ରକାର ନିର୍ଲଜ୍ଜ ଆବେଦନ ତତେ ଛାଡ଼ିବାକୁ ହବ ସୁଭ୍ର !

ସୁଭଦ୍ରା—(କିଛି ବୁଝି ନ ପାରି) କ'ଣ ହେଇଚି ଅପା ?
ଶ୍ୟାମାଙ୍ଗୀ—କିଛି ହୋଇନି । ଯାହା କିଛି ହବ, ମୁଁ ତାର ଆରମ୍ଭ ମାତ୍ର !
ସୁଭଦ୍ରା—ଅପା ! (ଅତନୁର ପ୍ରବେଶ)
ଅତନୁ—ଶୂନ୍ୟ କକ୍ଷରେ ଦୁଇଟିଯାକ ଭଉଣୀ ଆଳାପ କରିବାରେ ବ୍ୟସ୍ତ, ଅତିଥିମାନେ କାହାନ୍ତି ? ପ୍ରୋଗ୍ରାମ୍ କ'ଣ ଗଲାନି ? (ହସି)
ସୁଭଦ୍ରା—ବାଃ, ତୁମେ ଭାରି ଭଲ ମଣିଷ ! ତୁମ ଜବାବରେ ଠିକ୍ ନାହିଁ...ଚଞ୍ଚଳ ଠକ ତୁମେ ! ବେଳାବେଳ ଫେରିବ ବୋଲି ଜବାବ କରିଥିଲ...ନା ?
ଅତନୁ—କାମ ଚାପରେ ସବୁ 'ଭୁଲିଯିବାକୁ ପଡୁଚି ସୁଭା ! ମୁଣ୍ଡ ଉପରେ ଏତେ ଦାୟିତ୍ୱ ଯେ ଟିକିଏ ବିଶ୍ରାମ ନେବାକୁ ସମୟ ନାହିଁ । କାଲି ସକାଳୁ ପୁଣି ଯାଜପୁରର ବନ୍ୟା ଅଞ୍ଚଳକୁ ଯିବାକୁ ପଡ଼ିବ ତରାଗା ଲୋନ୍ ବାଣ୍ଟିବାକୁ ! ସାଗର ଆସିଥିବ ?—
ସୁଭଦ୍ରା—ଆସିଥିଲେ...ହଠାତ୍ ଚାଲିଗଲେ !
ଅତନୁ—ମାନେ ?
ସୁଭଦ୍ରା—ଅମୀତା ଅପା ଆଉ ସେ ଟିକିଏ ଆଗରୁ ସାଙ୍ଗ ହୋଇ ଫେରିଲେ । ତା'ପରେ ହଠାତ୍ ଭଦ୍ରଲୋକଙ୍କର ପ୍ରସ୍ଥାନ ।
ଶ୍ୟାମାଙ୍ଗୀ—ସୁଭା, ତୁ ଯା—ଅତନୁ ଭାଇର ଖାଇବା ବ୍ୟବସ୍ଥା କର, ମୁଁ ଯାଉଚି । (ସୁଭଦ୍ରାଙ୍କର ପ୍ରସ୍ଥାନ)
ଅତନୁ—ସାଗରକୁ ଅଟକେଇଲନି ନୂଆବୋଉ ?
ଶ୍ୟାମାଙ୍ଗୀ—ନୂଆବୋଉ ବଚନରେ ସେ ଟାକନ୍ତି କାହିଁ ଅତନୁ ? ଅମୀତା ରହିଥିଲେ ଅବା—(ଅତନୁ ଖାଲି ହସୁଥିଲେ)

ଶ୍ୟାମାଙ୍ଗୀ—ତୁମେ ହସୁଚ ଅଚନୁ, ହେଲେ ଲଜ୍ଜାରେ ମୋ ମୁଣ୍ଡ ତଳକୁ ହୋଇ ଯାଉଚି ! ଡ଼କ୍ଟର ଦାସଙ୍କୁ ଦେଖା କରି ଆସିବାର କଥା ପଦେ, ତୁମେ ନିଜେ ଅଣୀତାକୁ ସାଙ୍ଗରେ ନେଇ ଚାଲିଲ ? ସାଗର ତୁମର ବନ୍ଧୁ ; ଅଣୀତାର ସେ କ'ଣ ?...

ଅଚନୁ—ଅଣୀତାର...?        (ହସିଲେ)

ଶ୍ୟାମାଙ୍ଗୀ - ସୁଧୀର ଆଜ ଜନ୍ମ ଦିନ...ବୁଝିଅ ଗୁଡ଼ାଏ ଆସିଥିଲେ... ସେମାନେ କ'ଣ ସ୍ୱପ୍ନ ଚନ୍ଦ୍ର କଲେ ! ଆଜ ଯାଇ ନଥିଲେ କ'ଣ ଚଳି ନଥାନ୍ତା ? ସେଥିରେ ପୁଣି ନିମନ୍ତ୍ରଣକୁ ଏଡ଼ ଦେଇ ବାବୁ ଜରୁରୀ କାମ ବୋଲି କହି ଚାଲିଗଲେ । କ'ଣ ଏ ସବୁର ଅର୍ଥ ?

ଅଚନୁ—ଅର୍ଥ ! (ଜୋର୍ କରି ହସି ଉଠିଲେ ଯେମିତି) ଅଣୀତା ଆଉ ସାଗର, ଏମାନଙ୍କୁ ତୁମେ ସନ୍ଦେହ କରୁଚ ନୂଆବୋଉ ? ଜାଣିନା, ଜାଣିନା ତୁମେ ନୂଆବୋଉ, ସାଗରକୁ ତୁମେ ଜାଣିନା ! (ଆବେଗଭରା କଣ୍ଠରେ)

ଶ୍ୟାମାଙ୍ଗୀ—ମୁଁ କିନ୍ତୁ କହି ରଖୁଚି ଅଚନୁ, ଘିଅ ନିଆଁ ଏକାଠି ଭଲ ନୁହେଁ ! ମଣିଷର ମନ ବଡ଼ ବିଚିତ୍ର; ଥରେ ଯଦି ତା' ଉପରେ ଦାଗ ଲଗିଯାଏ—

ଅଚନୁ—(ଯମୁନା ଦେବୀଙ୍କୁ ଆସିବାର ଦେଖି) ବନ୍ଦ କର ନୂଆବୋଉ, ବନ୍ଦ କର । ଆଜ୍ଞା ବୋଉ, ସାଗରର ଏଠିକି ଯିବା ଆସିବା କ'ଣ ବନ୍ଦ କରିଦେବ ? (ଶ୍ୟାମାଙ୍ଗୀଙ୍କର ପ୍ରସ୍ଥାନ)

ଯମୁନା—କାହିଁକି ରେ ? ସାଗରକୁ ଘର ବନ୍ଦ କରିବା କଥା ଉଠୁଚି କାହିଁକି ?

ଅଚନୁ—ତା' ହେଲେ ଅଣୀତା ସାଙ୍ଗରେ ତା'ର ମିଳାମିଶାକୁ ତୁ ପସନ୍ଦ କରୁଚୁ ?

ଯମୁନା—(ନୀରବ)

ଅତନୁ—କହ, ଭୁନ· ହେଲୁ କାହିଁକି ? କହ···

ଯମୁନା—କଣ’ କହିବ ! ବଡ଼ ଘର ପିଲା···ଆଗରୁ ତମମାନଙ୍କ ସାଙ୍ଗରେ ସେମିତି ଚଳି ଆସିଚ । ହଉ, ହଉ, ମୁଁ କହିଦେବ । ସାଗର ଆସୁ, ମୋ ପାଖରେ ବସୁ ସମସ୍ତଙ୍କ ସାଙ୍ଗରେ କଥାବାର୍ତ୍ତା ଗପସପ କରୁ, ହେଲେ ବୋହୂ ସାଙ୍ଗରେ ଏଠିକି ସେଠିକି ଯିବା ଆସିବା···ଆମ ଘରକୁ ଏକଥା ଭଲ ଦେଖେଇବ ନା । ଅସୀତା ତ ଏଇନେ ଝିଅ ହେଇ ନାହିଁ, ଘରର ବୋହୂ, ଘରର ଇଜ୍ଜତ ! ଆ, ତୁ ଖାଇବୁ ଆ, ଡେରି ହେଲାଣି । ଆଲୋ ବୋହୂ, ବୋହୂ ! (ଡାକି ଭିତରକୁ ଗଲେ । ଅତନୁ ପକେଟରୁ ସିଗାରେଟ୍ କାଢ଼ି ଲଗାଇଲେ । କୋଠ୍ କାଢ଼ି ଆଲଣାରେ ରଖିଦେଲେ)

ଅସୀତା—କ,ଣ କରେଗି ସଣଲ ?—(ଆସିଲେ)

ଅତନୁ—ହୁଁ !

ଅସୀତା—ପରମବନ୍ଧୁ ଗଲେ କୁଆଡ଼େ ? ସାଗରକୁ ଦେଖୁନ ଯେ !

ଅତନୁ—ସେ କଥା ପ୍ରିୟ-ବାନ୍ଧବୀ ଜାଣନ୍ତି, ମୁଁ କମିତି ଜାଣିବ !

ଅସୀତା—ଭୋକ ଶୋଷ କ’ଣ ଅଜ ବନ୍ଦ ହେଇ ଯାଇଛି ତୁମର ?

ଅତନୁ—ହୁଁ !

ଅସୀତା—ଅଜାଙ୍କର hunger pill କଥା କାନରେ ପଡ଼ିନି ନା ପାଟିରେ ପକେଇଚ ? ଶୁଣିଚ, ଗୋବନ୍ଦ ବଚଗର ଭୋକ ଶୋଷ ସବୁ ବନ୍ଦ ହେଇ ଯାଇଚି ଅଜାଙ୍କ ଔଷଧ ଖାଇ !

ଅତନୁ—ଶୁଣିଚି । ଆଚ୍ଛା ଅସୀତା, ‘ସନ୍ଦେହ’ ବୋଲି ଯୋଉ ଶବ୍ଦ କଏ ଯିଏକୁ ସୃଷ୍ଟି କରିଚି କହି ପାରିବ ?

ଅସୀତା—କଏ ଆଉ ? ମନ, ସନ୍ଦେହୀ ମନ ! ଅତନୁ, ତମେ କ’ଣ ସାଗର ସହିତ ମୋର ମିଳାମିଶାରେ ସନ୍ଦେହ କରୁଚ ?

ଅଚନୁ—ସନ୍ଧି କୁହେ...

ଅସୀତା—କୁହ, ଅଟକଗଲ କାହିଁକି ?

ଅଚନୁ—ନା, ବିବାହ ପୂର୍ବରୁ ସେମିତି କୌଣସି ସର୍ତ୍ତ ଅବଶ୍ୟ ନ ଥିଲା —

ଅସୀତା—ଏ ସର୍ତ୍ତ କିନ୍ତୁ ନିଶ୍ଚୟ ଥିଲା ଯେ, ଆମ ତିନିଜଣଙ୍କର ବନ୍ଧୁତା ଅକ୍ଷୁର୍ଣ୍ଣ ରହିବ । ହଉ, ତୁମେ ଭିତରକୁ ଆସ ।

ଅଚନୁ—ଅସୀତା, ସାଗର ମୋ ବନ୍ଧୁ, ତୁମର ମଧ୍ୟ ସେ ବନ୍ଧୁ— ମାତ୍ର ସେ ଅଚନୁ ନୁହେଁ, ସେ ସାଗର !

ଅସୀତା—ଅ-ଚ-ନୁ !

ଅଚନୁ—ମଣିଷକୁ ତୁମେ ଜାଣ ନି ଅସୀତା, ସେ ବଡ଼ ଅକୃତଜ୍ଞ ! ଜାଣି ମଧ୍ୟ ଅଜାଣତରେ ସେ ବହୁତ ଦୂରକୁ ଚାଲିଯାଏ ।

ଅସୀତା—ହଉ, ଦୟା କରି ଖାଇବା ଘରକୁ ଚାଲିବ କି—

ଅଚନୁ—Don't mind ଅସୀତା !

ଅସୀତା—Mind କରିବାର କଥା ନାହିଁ, ତୁମେ ଚାଲ !

(ଉଭୟଙ୍କର ପ୍ରସ୍ଥାନ)

—ପରଦା—

## —ଚତୁର୍ଥ ଦୃଶ୍ୟ—

[ ଅଳନ୍ଦ । ପୀତବାସ ବାବୁଙ୍କ ଘର, ଭିତରପଟୁ ଆସିଲେ ପୀତବାସ ବାବୁ, ଅଳକା ଦେଈ ଓ ସନ୍ତୋଷ୍ ! ସନ୍ତୋଷ୍ ନିମନ୍ତ୍ରିତ । ପୀତବାସ ବାବୁ ସାଗର ଅପେକ୍ଷାରେ ମଧ୍ୟ ଅଛନ୍ତି ବୋଲି ତାଙ୍କ ଭାବ ଭଙ୍ଗୀରୁ ଜଣା ପଡ଼ୁଥିଲା । ଆଗେ କଥା କହିଲେ ଅଳକା ଦେଈ]

ଅଳକା — ଜାଣିଲୁ ବାପା, ସେଇ ଗୋଟିଏ ବୋଲି ମୋର ଝିଅ । ପୁଅଟିକୁ ତ ଦେଖୁଚ — ତମକୁ ମୁଁ ଜୋଇଁ ବୋଲି ପାଇବି ନାହିଁ, ତମେ ହବ ମୋ ପୁଅ, ମୋ ବନ୍ଦୁର ବଡ଼ଭାଇ ।

ପୀତବାସ—ଦେଖ ବାବୁ, ତମେ ଶିକ୍ଷିତ, ବୁଦ୍ଧିମାନ୍ ! ତମ ହାତରେ ମୁଁ ଇମିତି ରତ୍ନଟିଏ ଦେବି, ଜୀବନର ଯେ କୌଣସି ଅବସ୍ଥାରେ, ଯେ କୌଣସି ପରିସ୍ଥିତିରେ ପ୍ରକୃତ ସାଥି ରୂପେ ସେ ତମ ଘର ସମ୍ଭାଳି ନବ । ପାଠ ପଢ଼ା ତା'ର ଏଇ ଘରକରଣାରେ ଶେଷ ! ଏତେ ଦୈନ୍ୟ ଭିତରେ ସେଇ ମା' ମୋର ଏ ଦରଭଙ୍ଗା ସଂସାରକୁ ଚଳେଇଚି ସିନା; ନ ହେଲେ ଆମେ ସମସ୍ତେ ହଜିଗଲେ ସେସିନ୍ ! ଆମର ସେଇ ସବୁ ! (କହୁଁ କହୁଁ ଆଖି ତାଙ୍କର ଲୁହରେ ପୂରି ଆସିଲା )

ସନ୍ତୋଷ୍ — ଆପଣ ବ୍ୟସ୍ତ ହୁଅନ୍ତୁ ନା !

ଅଳକା—ବ୍ୟସ୍ତ କଥା କ'ଣ କହିବ ବାପ, ଭୋକ ନାହିଁ କି ଶୋଷ ନାହିଁ, ଦିନ ରାତି ଅଖିକ ଆଉ ନିଦ ବି ନାହିଁ !

ନୀଳବାସ—ତମ ବାପା, ଦାଦା ବହୁତ ଯୌତୁକ ଦାବୀ କରୁଛନ୍ତି । ଦବାର କ୍ଷମତା ମୋର ନାହିଁ, ଶକ୍ତି ଅନୁଯାରେ ଯେତିକ ପାରିବି ସେତିକ ଦେବି ।

ସନ୍ତୋଷ—ବାପା ଦାଦା ହଉଛନ୍ତି ମୁରବୀ । ତାଙ୍କ ଜବାବ୍‌କୁ ଖିଲାଫି କୌଣସି କାମ କଲା ଭଳି ସାହସ ମୋର ନାହିଁ । ମୋତେ ଆପଣ ଭୁଲ ବୁଝିବେ ନାହିଁ !

ଅଳକା—ହେଲେ, ତୁମେ ବୁଝେଇ ଦେଲେ ସେମାନେ ବୁଝିଯିବେ ବାପା ! ତୁମେ ପାଠ ପଢ଼ି ଉପଯୁକ୍ତ ହୋଇଚ, ତମ କଥାର ବି ବହୁତ ଦାମ୍ ଅଛି ବାବୁ !

ସନ୍ତୋଷ—କିନ୍ତୁ ଗୋଟାଏ ଜବାବ୍ ଦେଇ ଦବା ମୋ ପକ୍ଷରେ ଅବଶ୍ୟ···ଦେଖନ୍ତୁ ଅଜ୍ଞା, ଆପଣ ତ ସବୁ ଜାଣନ୍ତି !

ନୀଳବାସ—ଜାଣେ ବାବୁ, ଜାଣେ ! ତମର ଯୋଗ୍ୟତା ନେଇ ତମେ ଯୋଉଠୁ ବେଶୀ ଯୌତୁକ ପାଇବ, ସେଠି ତୁମର ବାପା, ଦାଦା ଯଦି ବିବାହ ପ୍ରସ୍ତାବ କରନ୍ତି, ତା'ହେଲେ ସେମାନେ ଅନ୍ୟାୟ କରୁଚନ୍ତି ବୋଲି ମୁଁ କହିବି ନାହିଁ । ବୋହୂଟିକୁ ଘରକୁ ଆଣିବା ସାଙ୍ଗେ ସାଙ୍ଗେ ଜାନ୍ଦି-ଯୌତୁକ, ଆଉ ଅଳଙ୍କାରରେ ଘର ପୂରି ଉଠୁ—ଏ କଥା କିଏ ନ ଚାହେଁ ? ହଉ, ଈଶ୍ୱର ତୁମର ମଙ୍ଗଳ କରନ୍ତୁ ।

( ବାହାର ପଟୁ ସାଗର ଆସିଲେ )

ସାଗର—ଆସୁ ଆସୁ ମୋର ଟିକିଏ ଡେରି ହୋଇଗଲା ମାଉସୀ, କିଛି ମନେ କରିବ ନାହିଁ । ଆଉ, ସନ୍ତୋଷ ବାବୁଙ୍କର ଖବର କ'ଣ ?—

ସନ୍ତୋଷ—ନମସ୍କାର, ଆଜ୍ଞା !

ସାଗର—ନମସ୍ତେ ! (ହସି ହସି) ସ୍ୱରୂକୁ ଆମର ଦେଖିନ' ବୋଧେ?

ସନ୍ତୋଷ୍—(ଲଜ୍ଜାରେ) ଥାଉ, ଆଜ୍ଞା—

ସାଗର – ଦେଖିନ' ତା'ହେଲେ ? ସ୍ୱରୂ, ସ୍ୱରୂ, ଏଠିକି ଟିକଏ ଆସିଲୁ !

ଅଳକା—ଇଆଡ଼େ ଆସିଲୁ ମା ! (ସ୍ୱରୂ ଆସି ଅଧୋବଦନରେ ଛିଡ଼ା ହେଲା )

ସାଗର—ହଉ, ଯା—(ସ୍ୱରୂର ପ୍ରସ୍ଥାନ) ଇମିତ ସୁନା ପୁଲ୍‌ଟି ତୁଳନାରେ ଘଣ୍ଟା, ସାଇକେଲ୍‌କ ବସ୍ତ୍ରାଖର୍ଚ୍ଚ—ସେ ସବୁ କ'ଣ ବଡ଼ ? ଯୌତୁକର ତାଲିକା ମୁଁ ତମକୁ ଦଉଛି ଶୁଣ । ଖୁବ୍ ଭଲ ସୁସ୍ଥ ସୁନ୍ଦର ଗାଈଟିଏ ଦବା—ଯଥେଷ୍ଟ କ୍ଷୀର ମିଳିଲା ଭଳି । ଚାଷ ପାଇଁ ଭଲ ବଳଦ ଦୁଇଟି – ଦେଖିଲା ଭଳି, ବେଶ୍ ଆଖି-ଦୁରୁଶିଆ; ଆଉ ଭଲ ସିଲେଇ କଳ ଗୋଟାଏ, ଖୁବ୍ ମଜବୁତ୍—ବାସ୍ ଏତିକି ।

ପୀତବାସ—ତାଙ୍କ ବାପା ଦାଦା ଯାହା ସ୍ୱତନ୍ତ୍ର, ମୋ ଶକ୍ତିର ବାହାରେ ।

ସାଗର—ଆପଣ ମତେ ଟିକଏ ସମସ୍ତ ହଅନ୍ତୁ ମଜସା ! ସନ୍ତୋଷ୍ ବାବୁ, ତମର ମତ କ'ଣ ?

ସନ୍ତୋଷ୍—ଏଥିରେ ମୋର ନିଜସ୍ୱ କିଛି ନାହିଁ, ଆଜ୍ଞା ! ମୁରବୀ-ମାନଙ୍କ କଥାରେ ଅବାଧ ହୋଇ ମୁଁ କିଛି କରି ପାରିବି ନାହିଁ ।

ସାଗର – ବୁଝିଲି, ତାହାଲେ ଦାନ ଉପରେ ଖୁବ୍ ଚଢ଼ା ଦକ୍ଷିଣା ସ୍ୱହଁତ ! ବଂଶ-ଶତାବ୍ଦୀର ଉଚ୍ଚ ଶିକ୍ଷିତ ଯୁବକ ! ମୁଁ ତୁମକୁ congratulate କରୁଚି । ( ନାଟକୀୟ ଭଙ୍ଗୀରେ ହସିଲେ ) ତୁମେ ଏବେ ବ ସେଇ ଊନବିଂଶ ଶତାବ୍ଦୀରେ ପଡ଼ି ରହିଚ !

ସନ୍ତୋଷ୍ - ଦାବୀରୁ ଆପଣମାନେ କଣ୍ଟା ହେଲେ ପୂରଣ କରନ୍ତୁ !
ଅନ୍ତତଃ ପକ୍ଷେ ଘଣ୍ଟା, cycle···

ସାଗର — ହାତରେ ଘଣ୍ଟା ଯନ୍ତ୍ର ଏତେ ବାନ୍ଧିବାର ସଉକ୍, ସାଇକେଲ୍ ଚଢ଼ି ହାଓ୍ୱାନ୍ନ ପିନ୍ଧ ବୁଲିବାର ଯନ୍ତ୍ର ଏତେ ଆଡ୍ଡା···ନିଜେ ରୋଜଗାର କରି କିଣି ନେଉଥ, ତା'ହେଲେ ସିନା ଜାଣିବା ! ଏ ଗରିବ ଶ୍ୱଶୁର ଘର ଉପରେ ଏତେ ଲୋଲୁପ ଦୃଷ୍ଟି କାହିଁକି ?

ସନ୍ତୋଷ୍ — ଦେଖନ୍ତୁ, ଘରକୁ ନିମନ୍ତ୍ରଣ କରି ଆଣି ··ଇମିତି କଥା ଆପଣମାନେ ମତେ ଶୁଣେଇବେ, ଏ ଧାରଣା ଥିଲେ ମୁଁ ବରଂ ପ୍ରସ୍ତୁତ ହୋଇ ଆସିଥାନ୍ତି, ଅବା ଆସି ନ ଥାନ୍ତି—

ପୀତବାସ — ତୁମେ ଯାଅ ବାବୁ ! ସନ୍ତୋଷ୍ ବାବୁ, ତୁମେ ଯାଅ—

ସାଗର — ଆଚ୍ଛା, ସନ୍ତୋଷ୍ ବାବୁ ! ତୁମ ମୁରବୀଙ୍କର ଅନ୍ୟାୟ ଦାବୀ ସବୁ ସେବେ ପୂରଣ କରାଯାଏ ! କଣ, ରାଜି ? କଣ କହୁଚ ? "ମୌନଂ ସମ୍ମତି ଲକ୍ଷଣମ୍" ? କିନ୍ତୁ ମନେ ରଖ ସନ୍ତୋଷ୍ ବାବୁ, ନିତାନ୍ତ ଘଣ୍ଟା, ସାଇକେଲ୍ ଦେଇ ଯଦି ବାହାଘର କରିବାକୁ ପଡ଼େ, ତାହେଲେ ତୁମ ଭଳି ନିଜତ୍ୱ ନ ଥିବା ଗୋଟିଏ ଯୁବକ ସହିତ ନୁହେଁ ।

ସନ୍ତୋଷ — (ଆହତ ହୋଇ) ଆପଣ ଯେତେବେଳେ ଯୌତୁକ ପ୍ରଥା ବିରୁଦ୍ଧରେ, ତା'ହେଲେ ନିଜେ ବରଂ ବାଧା ଦେଇ ପଡ଼ନ୍ତୁ — ମୋ ଉପରେ ଏତେ ଜବରଦସ୍ତି କାହିଁକି ?

ସାଗର — ସନ୍ତୋଷ୍ ବାବୁ ! (ଉତ୍ତେଜିତ କଣ୍ଠସ୍ୱର)

ପୀତବାସ — ଥାଉ ସାଗର, ଥାଉ !

ସନ୍ତୋଷ—ଯଥେଷ୍ଟ ହୋଇଛି ଆଜ୍ଞା, ଗୋଟିଏ ଡିପାର୍ଟମେଣ୍ଟର ଲୋକ ଆମେ——ଏକାଠି କାମ କରୁ—ନ ହେଲା ବା ଟିକିଏ ଅପମାନିତ କଲେ—ମୁଁ ଦୁଃଖ କରୁନ । ନମସ୍କାର । (ପ୍ରସ୍ଥାନ)

ସାଗର—ନିଲାମ୍ ହବାକୁ ଚାହୁଁଛ ନା ? ଯାଅ, ବାପା ଦାଦାଙ୍କୁ ଚମର କହିବ, ଚମ ବାହାଘର ସେମାନେ ଗୋଟାଏ ଟ୍ରେଜେଡି କ ଗୋଟାଏ ବ୍ୟାଙ୍କ୍ ସାଙ୍ଗରେ କରି ଦେବେ ! ଦେଖିଲେ ତ ମଜା, ଯୁବକଟି ଅପଣାକୁ 'ନଜର ନାଇଁ' ବୋଲି କେମିତି ଚାହୁଁଇଲା ! ଛି-ଛି ! (ଅଭିମାନରେ)

ପୀତବାସ—ପ୍ରକୃତରେ ସାଗର, କନ୍ୟାଦାୟଗ୍ରସ୍ତ ପିତା ଠୁଁ ବଳି ହତଭାଗ୍ୟ ସଂସାରରେ ଆଉ କେହି ନାହିଁ !

ଅଳକା—(କାନ୍ଦ କାନ୍ଦ) ବାବୁଟା ଯେମିତି ହୀନ-କପାଳ, ଏ ଟୋକଟା ବି ସେମିତି ହୀନ-କପାଳ । ଠାକୁରେ ଆମ ଭଲ ଚାହାନ୍ତି ନ !

ରୁକ୍ମ—(ଆସିଲେ) ବୋଉ, ସତରେ ଏ ଘରେ କ'ଣ ମୁଁ ଗୋଟିଏ ଅଭିଶାପ ? ସମସ୍ତ କ'ଣ ମୋର ପାଇଁ···

ପୀତବାସ—ଭଗବାନ ! ଗରିବ ବାପ ମା' କୋଳରେ ଝିଅ ତୁମେ ଦିଅ କାହିଁକି ? କାହିଁକି ! ଖୋଇ ପେଇ ପିଲାଝିଅଙ୍କୁ ମଣିଷ କରି ଦୁନିଆ ଆଗରେ ଛିଡା କରେଇବାର ଚାକିରି ଯୋଗ୍ଯ ବାପ ମା'ଙ୍କର ନାଇଁ ତାଙ୍କ ଘରେ କେବେହେଲେ ପିଲା ଖେଳ ତୁମେ ଲଗେଇବ ନାଇଁ ଭଗବାନ ! ତୁମକୁ ତୁମରି ନିୟମ ! (ପ୍ରସ୍ଥାନ)

ଅଳକା—ସାଗର, ତୁମେ ରୁକ୍ମକୁ ନେଇ ଭିତରକୁ ଆସ, ସେ ପାଗଳ ହୋଇଯିବେ । (ପ୍ରସ୍ଥାନ)

ରଞ୍ଜୁ—ତୁମେ ମତେ କହିଦିଅ ସାଗର ଭାଇ, ଏଥିରେ ମୋ ଜନ୍ମ କଣ ସତକୁ ସତ ଗୋଟାଏ ଅଭିଶାପ ?

ସାଗର—ମୋ ଧ୍ୟାନ ଭୁ ଥାଙ୍କି ଦେ'ନା ରଞ୍ଜୁ ! ଏଇଠି···ଏଇ ମାଟି ଉପରେ ଛୁଆ ହୋଇ ଆମରି ଦେଶର, ଆମରି ଘରର ଜଣେ ଓଡ଼ିଆ ଧୂଅ ଆଜ ଆପଣାକୁ ଅସମର୍ଥ ଆଉ ନିଜଭୂଷଣ ବୋଲି ସ୍ୱୀକାର କରିଗଲା । କି ନିର୍ଲ୍ଲଜ ! ଏଇ ପ୍ରକାର ଶିକ୍ଷା ଆଉ ମନୁଷ୍ୟତାକୁ ମୁଁ ନିର୍ଲ୍ଲଜତା ଛଡ଼ା ଆଉ' କିଛି କହିବ ନାହିଁ । ଯେ ବର୍ବରତା ନୁହେଁ; ହୀନତା, କ୍ଲୀବତା !

ରଞ୍ଜୁ—ସତେ କ'ଣ ମୁଁ ଇମିତି ଅଭାଗୀ ହତଲକ୍ଷ୍ମୀ ଯେ, ମତେ ଘରୁ ନ ତଡ଼ିବାଯାଏ ତୁମ୍ଭମାନଙ୍କର ନିସ୍ତାର ନାହିଁ !

ସାଗର—ଗରିବ ଘର ଝିଅ ବୋଲି ହୁଏତ କାଲି ସକାଳେ ଏଇ ନିର୍ଲ୍ଲଜ ସନ୍ତାନ୍ ତୋର ଦୁର୍ନାମ କରିବ । ହେଲେ ତୁ ଭରସା ରଖ ରଞ୍ଜୁ, ତୋ ସାଗର ଭାଇ କେବେହେଲେ ତୁମ୍ଭମାନଙ୍କର ଅଯତ୍ନ କରିବ ନାହିଁ !

ରଞ୍ଜୁ—ଦୁର୍ନାମକୁ ମୁଁ ଡରୁ ନ ସାଗର ଭାଇ, ମୁଁ ଡରୁଚି ତୁମରି-ମାନଙ୍କୁ ! ପୁରୁଷ ବୋଲି, ଝିଅମାନଙ୍କ ଉପରେ ତୁମର ବହୁତ ଜୋର୍ ନା ?—

ସାଗର—ହଠାତ୍······

ରଞ୍ଜୁ—ସାଗର ଭାଇ ! ଦୁର୍ନାମ ହୁଏତ ମୋ ଜୀବନରେ ସବୁ ଦିନେ ଲାଗି ରହିଥିବ—ରହୁ, କ୍ଷତି କ'ଣ ! ବନ୍ଧୁଟି ପାଇଁ ମତେ ଯଦି ମରିବାକୁ ହବ, ତା'ହେଲେ ମୁଁ ରାଜି !

ସାଗର—ବନ୍ଧୁ କଥା ମୁଁ ବି ଭାବୁଚି ରଘୁ ! ଗୋଡ଼ ଛୋଟା ବୋଲି ଛୋଟ ହେଇ ସେ ରହିବ ନାହିଁ । ଆଘାତ ପାଇଲେ ବି ପ୍ରତିଭା କେବେ ଲୁଚନ୍ତି, କି ଲୁଚି ରହି ପାରେନା !

ରଘୁ—ତମର କଥା ସତ ହଉ, ସାଗର ଭାଇ ! ବନ୍ଧୁ ଶାଇଁ ରହୁ, ଭଲରେ ଥାଉ ! ତୁମେ ଆସ—ତୁମକୁ ଅନେଇ ଏ ପର୍ଯ୍ୟନ୍ତ କୁଣିଆଟି ଛଡ଼ା ଆଉ କେହି ଖାଇ ନାହାନ୍ତି । ଓଃ, ନିମନ୍ତ୍ରଣ ଖାଇ ଫେରିଲ ବୋଧହୁଏ ?—

ସାଗର— ନା, ରଘୁ, ଭୋକ ହେଲାଣି, ଚାଲ । (ଉଭୟଙ୍କର ପ୍ରସ୍ଥାନ)

—ପରଦା—

## —ପଞ୍ଚମଦୃଶ୍ୟ—

[ଡାକ୍ତର ଦାସଙ୍କ ଘର । ପରଦା ଉଠିଲା ପରେ ଦେଖାଗଲା ଭୋଜନର ଆଧିକ୍ୟ ହେଲେ ଲୋକେ ଯେମିତି ଗଡ଼ନ୍ତି, ଠିକ୍ ସେମିତି ଗୋବନ ବିଚରା ଟୋଟିଏ ଶୋଫା ଉପରେ ଗଡ଼ୁଛି । ହାତରେ ଦୁ'ଖଣ୍ଡ ବହି ଧରି ଆସିଲା ଡ୍ରାଇଭର୍ ରଣଜିତ୍ । ]

ଡ୍ରାଇଭର—ଓ, ଗୋବନ ଭାଯ୍ୟା ! ନମସ୍ତେ, ଗୋବନ ଭାଯ୍ୟା !

ଗୋବନ—ବାଗା ରଣଜିତ୍ ! ମୋ ମୁଣ୍ଡଟାକୁ ଟିକଏ ଚିପି ଦେଲୁ !

ଡ୍ରାଇଭର—ଠିକ୍ ହେ ଭାଯ୍ୟା—(ମୁଣ୍ଡ ଚିପୁ ଚିପୁ) ଗୋବନ ଭାଯ୍ୟା !

ଗୋବନ—ଧେତ୍ ତେରି ! କଥାଟା ନ କହି ତୁ ଏଇଠି ଏଇଠି କେତେଥର କେତେଟା ଭାଯ୍ୟା, ଭାଯ୍ୟା କହିଲୁଣି ? ମୋ କାନମୁଣ୍ଡା ଖାଲି ଭାଁ ଭାଁ ହେଇ ଯାଉଚି ତୋ ପାଟିରେ ।

ଡ୍ରାଇଭର—ଗୋବନ ଭାଯ୍ୟା, କିତାପ୍ ଲୋ । ତୁମ ହାମ୍‌କୁ ଓଡ଼ିଆ ବର୍ଣ୍ଣବୋଧକ୍ ପଢ଼ାଓ, ହାମ ତୁମକୁ ହିନ୍ଦିକେ ପହିଲି କିତାବ୍ ପଢ଼ାଏଙ୍ଗେ । (ଦୁଇଟି ବହି ଆଣିଛି)

ଗୋବନ—ସେ କଥାଟି ନେହି ପଟେଙ୍ଗ୍···ତୋ ଓଡ଼ିଆ କି ହିନ୍ଦି କିତାପରେ ମୋର ଆଉ କିଛି ନାହିଁ । ଏଇଠେ ମୁଁ ଗଡ଼ିଲି ସଞ୍ଜଯାଏ । ତୁ ଯା—ମୋ ପେଟଟା ଫମ୍ପେଇ ଦେଇ ମତେ ଏକଦମ କାବୁ କରି ପକେଇଚି ରେ ରଣଜିତ୍ !

ଡ୍ରାଇଭର—କ୍ୟା ? ଏ ଗୋବନ ଭାଯ୍ୟା, ତବିୟେତ୍ ଆଚ୍ଛା ନେହି କ୍ୟା ? କ୍ୟା କୁଛ୍ ଗଡ଼୍ ବଡ଼୍···

ଗୋବିନ୍ଦ—(ବିରକ୍ତିରେ) ମୋ ମୁଣ୍ଡ ପାଖରେ ତୁ କାହିଁକି ଗୋଟିଏ ଭଡ଼ ଭଡ଼ ହଉଚ୍ କହିଲୁ ! ବାପ ରଜେନ୍ଦ୍ର, ତୁ ଏଇନେ ଯା—ମୁଁ ଆଗ ଭଲ ହୁଏଁ, ତେଣିକି ଯାଇ ପଢ଼ାପଢ଼ି ହବ ।

ଡ୍ରାଇଭର—ଲେକିନ୍......

ଗୋବିନ୍ଦ—ତୁ ଗୋଟିଏ ପାଣିରଙ୍କୋକ, ବୁଝିଲୁ ! ତୋ ମୁହଁରେ ନୁଣ ନ ମାଡ଼ିବାଯାକେ ତୁ ନ ଛାଡ଼ୁ । ଓହୋଃ, କ'ଣ ତୁ କହୁଚୁ କହିଲୁ ? (ଉଠିବାକୁ ଚେଷ୍ଟା କରି)

ଡ୍ରାଇଭର—ଏ ଓଡ଼ିଆ ଅକ୍ଷର ଯୋ ହୈ ନା···ଏ ତ ସବ୍ ବିଲ୍‌କୁଲ୍ ଆଳୁକା ମାଫିକ୍ ଗୋଲ୍ ହୈ ବରାବର୍......

ଗୋବିନ୍ଦ—ତତେ ପରା କେତେ ଥର କହିଲିଣି, ତୁ ସେମିତି କଥା କଥାକେ ବଳଦ ଅଡ଼େଇଲା ପରି ହୈ ହୈ ହବୁ ନି···ଆଚ୍ଛା ରଜେନ୍ଦ୍ର ! ମୁଁ କ'ଣ ତୋର ଥଙ୍କା ?

ଡ୍ରାଇଭର—ଗୁସ୍‌ସା ମତ୍ କରନା ଗୋବିନ୍ଦ ଭାଇ ! ତୁମ୍ହାରା ଭାଷା ଦେଖ୍‌ନେ ଲିଖନେମେ ମେରା ଇତ୍‌ନା ଶୌକ୍ ହୈ ! ଥୋଡ଼ା ପଢ଼ାଓ ନା ଗୋବିନ୍ଦ ଭାଇ ! ହାମ୍‌କୁ ତୁମ୍ ଏ ଓଡ଼ିଆ କିତାବ୍ ପଢ଼ାଓ......

ଗୋବିନ୍ଦ—ମୁଁ ତତେ ପଢ଼େଇବି ! ମୁଁ କ'ଣ ପାଠ ପଢ଼ିଚି ଯେ ତତେ ପଢ଼େଇବି ! ଚଣ୍ଡାଳ ମତେ ନ ପଚାରି ଯୋଡ଼େ କିତାବ୍ ତୁ କିଣିଲୁ କାହିଁକି ! ଓଃ, ପେଟଟା ତ ଏକଦମ୍ ଫାମ୍ପି ଦେଇଚି; ଭଡ଼େଇ ଦେଇଚି ଯେ ଦମ ବନ୍ଦ ହେଇ ଯାଉଚି·· ଓହୋଃ !

( ବ୍ୟସ୍ତ ହେଇ ଆଉଜି ପଡ଼ିବା )

ଡ୍ରାଇଭର—ଗୋବିନ୍ଦ୍ ଭାଇ, କ୍ୟା ଓ୍ୱ ମୋଦକ୍ ଇତ୍‌ନା ବୁରା ଥା ? ଓ୍ୱ ଲଡ୍‌ଡୁ, ଲଡ୍‌ଡୁ......

ଗୋବନ୍ଦ—ହିଁ ରେ ବାପ ସେ ବାଲ୍ମୀକା ଲଡୁ...ଖାଇ ତ ଦେଇଚ,
ଯାଉ.ଚ କୁଆଡେ ·ି ତୁ ଖାଇଥିଲେ ବ ମଜା ଜାଣନ୍ତୁ !
ମେଠ ନ ନେଉ ର କ'ଣ ନେଇ ଯାଉଛରେ ରଣେଜତ୍ ! ପାର୍ମି
ହେ, ଅ.ଉ ଖଞ୍ଜ ଉଡ଼େ ବ ହେ । ର୍ନେଜତ୍ ! ମୋ ବାବା,
ମୁଁ ଏଥର ମ.ା ହେ—ତୁ କଣ୍ଟୁ କରେବେଙ୍ଗ ନେଇଁ ହେ ?

ଡ୍ରାଇଭର—ଆକ୍ଷା ଖପ୍ୱା ସବୁର୍, ସବୁର୍ ! ହାମ୍ ଥୋଡ଼ାସା ଜଞ୍ଜର
ତୁମକୁ ପିଲାଏଙ୍ଗେ—(ପ୍ରସ୍ଥାନ)

ଗୋବନ୍ଦ—ତୁ ଆଜ କ'ଣ ପିଲାଏଙ୍ଗେ କରିବୁ ! ଗୋବନ୍ଦ ତ
ଏଇଠି ମଲାଏଙ୍ଗେ, କ'ଣ କରେଙ୍ଗେ ! ଉଃ—ଚଣ୍ଡାଳ କ
ବୁଦ୍ଧି କଲ ରେ ! ବାବୁଙ୍କୁ ନ ପଚାରି ମୁଁ ଯାହା ହୁଡଲ !
ଓହୋଃ (ପୁଣି ଗଡ଼ିବାର ଅଭିନୟ । ଡକ୍ଟର ଦାସ ବାହାରୁ
ଆସିଛନ୍ତି, ହଠାତ୍ ଗୋବନ୍ଦର ଏ ଦୁର୍ଗତି ଦେଖି ଅଟକିଗଲେ)

ଡ: ଦାସ—ଗୋବନ୍ଦ, କ'ଣ ହେଲା ? କଥା କ'ଣ ?...

ଗୋବନ୍ଦ—ଏ ନନ୍ଦଘୋଷ ରଥ ଏଥର ଅଚଳ ବାବୁ ! କ ବଟିକା
ତୁମେ ମତେ ଖୋଇଲ; ଲୋଭରେ ପଡ଼ି ପୁଞ୍ଜାଏ ପାଞ୍ଚଟା
ପିଠା ଅଜ ଖାଇ ଦେଲି; ଆଜ ପିବ କୁଆଡ଼େ ! ଘଣ୍ଟାଏ ହବ
ଇମିତି ଗଡ଼ୁଚ ଏଠି ! ଓହୋଃ, ମୋ ପେଟ...

ଡ଼:ଦାସ—ହଇରେ ଗୋବନ୍ଦ ! ତତେ ପଖ ପନ୍ଦ୍ରଶ ଟପି ଗଲାଣି—ବୁଢ଼ା
ହେଲୁଣି—ଲୋଭ ସମ୍ଭାଳି ନପାରି ଗୁଡ଼ାଏ ପିଠା ଗିଳି ଦେଲୁ ?

ଗୋବନ୍ଦ—କେତେ ପାଠି ମାରି ଜଗି ଚଳିବ କହିଲ ? କ ମୋଦକ
ମତେ ଦେଲ ଯେ...ସମସ୍ତେ ମହା ମଉଜରେ ବସି ଖାଉ ଥିବେ,
ମୁଁ ତାଙ୍କମାନଙ୍କ ପାଟିକି ଜଳଜଳ କରି ଅନେଇ ଥିବ !
ଖାଇବାକୁ ମନ କଲେ ବ ପେଟଟା ସବୁବେଳେ ଯେମିତି ଟୁମ୍ !

ଡ.ଦାସ —କେତୋଟା ପିଠା ଖାଇଛନ୍ତି ? — ଏଁ ?

ଗୋବିନ୍ଦ—ପାଞ୍ଚ ଛ’ ଟା ଖାଉଁ ଖାଉଁ ତ ଖାଇଦେଲି !

ଡ:ଦାସ—ଓଃ ଲୁ କୋଉଠିକାର ! ଭୋକ ହେଲା ବୋଲି ଖାଇଲୁ ନା ସେମିତି ଖୁସିରେ···

ଗୋବିନ୍ଦ—ଭୋକ ଆଉ ରହିଛି ଯେ ହବ ! କ’ଣ ଡ ଡିକାଏ ଖୋଇ ଦେଇଛ ଯେ ଗଲା ନନ୍ଦଘୋଷ ରଥ ଅଚଳ !

ଡ଼:ଦାସ—ଆଜି ଇମିତି ଲାଗୁଛି, ନା ସବୁ ଦିନେ ଇମିତି ଲାଗେ ?

ଗୋବିନ୍ଦ—ସବୁବେଳେ ପେଟଟା ଯେମିତି ଭରତି ହୋଇ ରହୁଛି !

ଡ଼: ଦାସ—ସେ ବଟିକା ଖାଇଲା ଦିନୁଁ ଭୋକ ଆଉ ହେଉନି ତ ?

ଗୋବିନ୍ଦ—ନା ! ହେଲେ କ’ଣ ହେଲା ବାବୁ, ଭୋକ ନ ଥିବାରୁ ସବୁବେଳେ ଅଳସୁଆ, ମାଦାପରି ଲାଗୁଛି । ଏକଦମ୍ ଅଚଳ ! ଦେଖୁନ, କମିତି ମାଦଳ ମିତି ଗଡ଼ୁଛି ! କୋଉ କଥାରେ ସରାଗ ନାହିଁ···କଷ୍ଟ ନାହିଁ !

ଡ଼: ଦାସ—(ମୁଣ୍ଡ ହଲାଇ) ନା, ନା, ଏୟେ କମିତି ସମ୍ଭବ ହେଲା ! କି ଆଶ୍ଚର୍ଯ୍ୟ ! ପୃଥିବୀରେ ସମସ୍ତେ କ’ଣ ଏ Hunger pill ଖାଇଲେ ଇମିତି ଅଚଳ ହେଇଯିବେ ! (ଡ୍ରାଇଭର ରଞ୍ଜନ୍ ସୋଡ଼ା ବୋତଲ ନେଇ ଫେରନ୍ତି) ଏସେ କ’ଣ ?

ଡ୍ରାଇଭର—ସୋଡ୍ ଡ଼ା ପାନି ସା’ବ୍ !

ଡ଼: ଦାସ—କ’ଣ ଗୋବିନ୍ଦର ବିବାଦ ? ଦରକାର ନାହିଁ, ନେଇ ଯା-- (ରଞ୍ଜନ୍ ଚାଲିଗଲା) ମୁଁ ପୁଣି ବ୍ୟବସ୍ଥା କରିବ ! ହେଲେ··· ଏୟେ କ’ଣ ହେଲା ! ସାଗରର ସେଦିନ କଥା କ’ଣ ତା’ହେଲେ ଠିକ୍ ହେଲା ? ଦୀର୍ଘ ୪୦ ବର୍ଷର ସାଧନା ମୋର ସବୁକୁ ସବୁ କ’ଣ ଗୋଟାଏ ବିରାଟ ଭଗ୍ନ-ସ୍ତୂପରେ ପରିଣତ ହେଇଗଲା ?

ଗୋବର୍ଦ୍ଧନ, ସେ କେମିତି ହେଲା ? ପରମାଣୁ ଶକ୍ତି ବୋଲି ମଣିଷର ଯାହା ଦରକାରୀ ବୈଜ୍ଞାନିକ ତାକୁ ଆବିଷ୍କାର କଲା, ଅଥଚ ସେଇ ଫେର୍ ହେଲା ମଣିଷର କାଳ ! ଆଃ, କି ଭ୍ରମ, କି ଭ୍ରମ ! (ଅବଶେଷ କରି ) ଆଚ୍ଛା ଗୋବର୍ଦ୍ଧନ, ତୁ ଥା—ମୁଁ ପୁଣି ତୋର ଶୋକ ଶୋଷ ସବୁ ଫେରେଇ ଆଣିବି !

ଗୋବର୍ଦ୍ଧନ—ଯାହା କରୁଚ କର ବାବୁ, ହେଲେ ତୁମେ ମନ ଦୁଃଖ କର ନା । ଉପରୁ ଯେତେ ଦିନ ଯାକେ ଡକରା ନ ଆସିଚି, ଗୋବର୍ଦ୍ଧନ ତମକୁ ଛାଡ଼ି ଯିବ କୁଆଡେ ! (ଚାଲିଗଲା)

ଡ଼ଃଦାସ—ସେ କ'ଣ ହେଲା ? କିମିତି ହେଲା ! ୫୦ ବର୍ଷର ସାଧନା—(ଅଚ୍ୟୁତ ଆସିଲେ) କିଏ···ଅଚ୍ୟୁତ ! ସାତରେ ସେଦିନ ଠିକ୍ କହିଥିଲ ଅଚ୍ୟୁତ ! ମୋର ଦୀର୍ଘ ସାଧନା ସତକୁ ସତ ଏକ ବିରାଟ ଭଗ୍ନ ସ୍ତୂପରେ ପରିଣତ ହୋଇଚି । ଆଜି ମତେ ଯେମିତି ଲାଗୁଚି···କୌଣସି ଏକ ପ୍ରିୟ ଜନର ସମାଧି-ମନ୍ଦିର ନିକଟରେ ମୁଁ ଛିଡ଼ା ହୋଇଚି, ବଡ ନିଷ୍ଫଳ ଭାବରେ···ଅତି ଅସହାୟ ଭାବରେ !

ଅଚ୍ୟୁତ—କ'ଣ ହେଲା ଆପଣଙ୍କର ଅଜା ?

ଡ଼ଃଦାସ—ଶୋକ ଶୋଷ ନ ରହିଲେ ସଂସାର ଅଚଳ, ଅଚ୍ୟୁତ ! ଗୋବର୍ଦ୍ଧନ ଠିଁ experiment କରି ଦେଖିଲି ମୋ ଥିଓରି ଭୁଲ୍ କାମ କଲା । ମଣିଷର ଖାଦ୍ୟ ପାଇଁ ଅନ୍ୱେଷଣ ନ ରହିଲେ ବି କାମ କରିବାର ଉତ୍ସାହ ତା'ର ଏକାବେଳକେ ଲିଭିଗଲା । ପୃଥିବୀ ହୋଇଗଲା ପଙ୍ଗୁ ! ହଁ, ଅଚ୍ୟୁତ ମୋ ଥିଓରି ଭୁଲ୍ କାର୍ଯ୍ୟ କଲା ।

ଅଚ୍ୟୁତ—ଏ ସବୁ ଆପଣ କ'ଣ କହୁଛନ୍ତି ?

ଡ଼:ଦାସ—ମୁଁ ଠିକ୍ କହୁଚି ! ସଂସାର ସୁଖୀ ଆଉ ସୁନ୍ଦର ହବାକୁ ହେଲେ "ଯୁଦ୍ଧ" ହେବା ଦରକାର । Struggle for existence' ବୋଧହୁଏ ବିଧାତାଙ୍କର ଇଚ୍ଛା !

ଅତନୁ— ମୁଁ ଆସିଥିଲି ଆପଣଙ୍କୁ ଗୋଟାଏ କଥା କହିବାକୁ । ଅସୀତାକୁ ଆପଣ ଟିକିଏ ସାବଧାନ କରେଇ ଦିଅନ୍ତୁ ।

ଡ଼:ଦାସ—ମାନେ ?—

ଅତନୁ—ସବୁ ମୁଁ ସହିନେବି, ହେଲେ ବୋଉ ମନରେ ମୁଁ କଷ୍ଟ ଦେଇ ପାରିବି ନା । ସାଗର ସାଙ୍ଗରେ ଅସୀତାର ଏତେ ବେଶୀ ଘନିଷ୍ଠତା ଆଉ ମିଳାମିଶା···ବୋଉ ଆଖିକି ଅନ୍ତତଃ ଭଲ ଦେଖା ଯାଉନି ।

ଡ଼:ଦାସ—କିନ୍ତୁ ସେ' ତ ତୁମ ବୋଉଙ୍କ କଥା ନୁହେଁ ଅତନୁ ! ସେ ତୁମରି ମନ କଥା । ବେଶ୍, ମୁଁ ଅସୀତାକୁ କହିଦେବି । ଯାହା ତୁମେ ନ ଚାହଁ, ସେ ବା ତା' କରିବ କାହିଁକି ? ସେ' ଟିକିଏ ଆଣରେ ଗୋବିନ୍ଦ ! ଏଇ ଗୋବିନ୍ଦ ଲୋକଟା ମୋର ଶତ୍ରୁ — ବୁଝିଲ, ଅତନୁ ! ସାଗରକୁ ସନ୍ଦେହ କଲା ଭଳି ଦୁର୍ବଳ ତ ତୁମେ ନୁହଁ ଅତନୁ···(ହଠାତ୍) · ନା, ନା, ତୁମ ମନ ଭିତରେ ଦୁର୍ବଳତାର କୀଟକୁ ପ୍ରବେଶ କରିବାର ସୁବିଧା ଦିଅ ନାହିଁ ! ତା'ହେଲେ ତୁମେ ସମସ୍ତେ ଠକିବ । ସାଗର ଗୋଟାଏ ଜୁଏଲ୍ । ମୋର ବିରାଟ ସାଧନାକୁ ସେ ଗୋଟାଏ ଭଗ୍ନସ୍ତୂପ ବୋଲି ପ୍ରମାଣ କରିଦେଲା; ସେ ପିଏ ସିଏ ମଣିଷ ନୁହେଁ ! ତେବେ ବି···ଅସୀତାକୁ ମୁଁ ନିଶ୍ଚୟ କହିବି । (ସେ' ନେଇ ଗୋବିନ୍ଦ ଆସିଛି)

ଗୋବନ୍ଦ – ଅସୀତା ମା'ଙ୍କୁ ମୋର କିଛି କହିବାକୁ ହବ ନ ବାବୁ, ସେ ଘର ଛୁଆ ନାତୁଣୀ···ବାପଛୁଆ···କ'ଣ ସେ ଜାଣିନ ଯେ, ତାଙ୍କୁ ଫେର୍ ତମେ କହିବାଯାଏ କଥା ଯିବ ।

ଡ଼:ଦାସ – ହତଭାଗା ! ଛ୍ଟ'ରେ ଠିକ୍ ଚନ ଦେଇଚୁ ନା ଦବାକୁ ହବ ?

ଗୋବନ୍ଦ—ବାବୁ, ଏ କାମ ଆଉ ମୋ ଦେଇ ହେଇ ପାରିବ ନ । ମୋ ସାତ ପୁରୁଷରେ କେହି ପୁଝାଙ୍କ ନ ଥିଲେ, ମୁଁ ଏଇଠି କହୁ କରୁ ହେଲି । ମୋର ଭୋକ ଶୋଷ ନାହିଁ···ମୁଁ ଫେର୍ ତମ ରନ୍ଧା ରାନ୍ଧିବ !

ଡ଼:ଦାସ--ତତେ ଭାରି କଷ୍ଟ ହଉଚି ନା ରେ ଗୋବନ୍ଦ ! ହଉ, ହଉ, ଏଥର ଗୋଟିଏ ପୁଝାରି ଦେଖ ! ମୋ ଜୀବନର ଡାଏରିଟା ତୋ ହାତରେ ଦେଇଥିଲି···ଅସୀତା ମା' ତ ମୋର ନାହିଁ··· ତୋ ଛଡା ମୋର ଆଉ କିଏ ଅଛିରେ ଗୋବନ୍ଦ ! (ଅତନୁ ମୁହଁ ତଳକୁ କରି ଛ୍ଟ' ପିଉଥିଲେ)

ଗୋବନ୍ଦ – ବା···ବୁ ! (ଲୁହ ଛଳ ଛଳ ଆଖି)

ଡ଼:ଦାସ—ଜୀବନ-ସନ୍ଧ୍ୟାରେ ଆମେ ଦୁଇଟି ଯାକ ଆସି ଛିଡ଼ା ହେଇ ଥାଇଁ ରେ ଗୋବନ୍ଦ ! କୁଆଡ଼େ କେତେବେଳ ଖସି ଯିବା··· ତା'ର ତ କିଛି ଠିକଣା ନାହିଁ । ହଉ, ତୋ' କାମରେ ତୁ ଯା ହତଭାଗା, ତୁ ଯା —(ଧୀରେ ଧୀରେ ଗୋବନ୍ଦର ପ୍ରସ୍ଥାନ) ହଁ, କଣ ତୁମେ କହୁଥିଲ ଅତନୁ ?

ଅତନୁ – ମୋ ସ୍ତ୍ରୀ ସାଙ୍ଗରେ ମୋର ଜଣେ ବନ୍ଧୁର ବନ୍ଧୁତା ରହିପାରେ ମାତ୍ର ତେତେ ଅବାଧ ମିଳାମିଶା, ଏଇଟା କଣ

ସୁନ୍ଦର ଦିଶୁଚି ଅଜା ! (କଥା ସରିବା ପୂର୍ବରୁ ଅର୍ପିତା ଓ ସାଗର ଆସି ପହଞ୍ଚିଲେ)

ସାଗର—ଏଇ କଥାଟା ଡକ୍ଟର ଦାସଙ୍କ ଆଗରେ କହି ତାଙ୍କ ମନରେ ଆଘାତ ଦବା ଅପେକ୍ଷା ମତେ ଖୋଲାଖୋଲି ପଚାରି ଥିଲେ ଭାରି ଭଲ ହୋଇଥାନ୍ତା, ଅତନୁ ! କେବେହେଲେ ଭୁଲରେ ସୁଦ୍ଧା ମୁଁ ତୁମ ଘର ମାଡ଼ି ନ ଥାନ୍ତି । ହେଲେ ତୁ ଏତେ ଦୁର୍ବଳ···ଏତେ ସଂକୀର୍ଣ୍ଣମନା !−−ଉଃ, ମୁଁ କଳ୍ପନା କରିପାରୁନି ତୁ ଏ କଥା କହି ପାରୁଚୁ କେମିତି ?

ଅତନୁ—ମୋ ଦୁର୍ବଳତାର ସୁଯୋଗ ନେଇ ଫାଇଦା ଉଠେଇବାକୁ ଚେଷ୍ଟା କରନା ସାଗର ! ମୁଁ ଯଥେଷ୍ଟ ଦେଖିଚି—ଖୁବ୍ ଦେଖିଚି ମୁଁ ।

ଅର୍ପିତା—(ଅତନୁ ପ୍ରତି) ଅତନୁ ! ତମର ଇଚ୍ଛା କରି ମତେ କହି ଦିଅ । ସବୁ କଥା ମୁଁ ଆଜି ଖୋଲାଖୋଲି ଭାବରେ ଜାଣିବାକୁ ଚାହୁଁଚି ।

ଅତନୁ—ଅର୍ପିତାକୁ ଆଗ୍ରହ କହନ୍ତୁ ଅଜା !

ଡ଼ା: ଦାସ — ଦେଖ ବାବୁ, ସେ ଦିନ ଏଇ ଘରେ ବସି ତମେ ଦୁଇ ବନ୍ଧୁ ଅର୍ପିତାର ଭବିଷ୍ୟତ ମୀମାଂସା କରିଥିଲ । ଆଜି ବି ଠିକ୍ ଏଇଠି ମୀମାଂସାର ଭାର ମୁଁ ତୁମରି ହାତରେ ଦେଇ ଯାଉଚି । ତୁମେମାନେ ସମସ୍ତେ ଉଚ୍ଚ ଶିକ୍ଷିତ, ବୁଦ୍ଧିମାନ; ମୋର କ'ଣ ଦରକାର ଏଠି ? ଥରେ ଯେତେବେଳେ ମୋର ବାସ୍ତବରେ ଭୁଲ୍ ହୋଇଗଲା, ସେଇ ଭୁଲ୍ ଯଦି ଏଇଠି ପୁଣି ହୋଇଯାଏ ! ନା, ମୁଁ ଚାଲି ଯାଉଚି । (ଚାଲିଗଲେ ଘର ଭିତରକୁ)

ଅସୀତା—ଆଉରି କ'ଣ ବାକି ଅଛି କହିବାକୁ କହିଯାଅ ଅତ ସାଗରକୁ ନୁହେଁ, ଯାହା କହିବାର କଥା ମତେ କୁହ ।

ଅତନୁ—(ବିଦ୍ରୂପ ଭରା କଣ୍ଠରେ) ଓଃ ନିଜ ଉପରକୁ ସବୁ ଟାଣି ନେଇ ପ୍ରିୟ ବନ୍ଧୁଟିକୁ ଏକାବେଳକେ ନିଷ୍କଳଙ୍କ କରିବାର ଚେଷ୍ଟା ? ବୁଦ୍ଧିଆ ତୁମେ ଅସୀତା, ବଡ଼ ବୁଦ୍ଧିଆ ତୁମେ; କିନ୍ତୁ ତୁମେ ତା' ପାରିବ ନାହିଁ । ସାଗର ଧରା ପଡ଼ିଯାଇଚି ?

ଅସୀତା—ଅତନୁ ! କଣ ତୁମେ କହୁ ଯାଉଚ ?...

ଅତନୁ—ମତେ ବିବାହର ନାମ ମାତ୍ର ବନ୍ଧନରେ ପକେଇ ଅସୀତା ସାଙ୍ଗରେ ଜୀବନକୁ ବେଶ୍ ଉପଭୋଗ କରୁଛ୍ ସାଗର ! ସତରେ ତୁ ଏତେ ଧୂର୍ତ୍ତ ବୋଲି ମୁଁ ଜାଣି ନ ଥିଲି...

ଅସୀତା—ଜଣେ ବନ୍ଧୁଙ୍କ ସାମ୍ନାରେ ନିଜ ସ୍ତ୍ରୀକୁ ତୁମେ ଇମିତି ଅପମାନିତ କରି ପାରିବ, ଏ ଧାରଣା ମୋର ନ ଥିଲା ! ଅତନୁ, ତୁମେ ଯଦି କହିଥିଲ ନା, ସାଟର ପାଇଁ ତୁମେ ମୁକ୍ତିପତ୍ର ଦେଇ ପାରିବ, ବିବାହ ମଧ୍ୟ କରିବ ନି—ଦେଖ, ସେଇ ସାଗର ବର୍ତ୍ତମାନ ତୁମ ସାମ୍ନାରେ...

ଅତନୁ—ସାଗରକୁ ଚିହ୍ନି ନ ଥିଲି, ଏବେ ଚିହ୍ନିଲି । ବିବାହ ସେ କରିନ—ଅବିବାହିତ ଜୀବନର ରୋମାନ୍ସ ସବୁ ଯଦି ଉପଭୋଗ କରିବ ବୋଲି ! ଅସୀତା ଜୀବନରେ କେବଳ ନୁହେଁ, ପୀତବାସ ବାବୁଙ୍କ ଝିଅ ରୁବି ଜୀବନରେ ମଧ୍ୟ ସେ କଳଙ୍କ ବୋଳି ଦେଇଚି—ଶୟତାନ୍ ! ଲମ୍ପଟ !

ଅସୀତା—ତୁନି ହୁଅ, ଅତନୁ ! ଗୋଟାଏ ଇତର ଲୋକ ଭଳି କଥା କୁହ ନି ତୁମେ—

ଅତନୁ— Shut up ! ମନ୍ତବ୍ୟ ପ୍ରକାଶ କରିବାର ଅଧିକାର ତୁମର ନାହିଁ ।

ସାଗର—ଧନ୍ୟବାଦ, ମୁଁ ଚାଲି ଯାଉଛି । ହେଲେ ଯିବା ଆଗରୁ ମୁଁ କହି ଯାଉଛି ଅତନୁ, ସାଗରକୁ ତୁମେ ଆଜି ସବୁଦିନ ପାଇଁ ହରେଇଲ ! ସେ ଭୁଲରେ ହେଲେ ତୁମ ସ୍ୱାମୀ-ସ୍ତ୍ରୀଙ୍କର ଜୀବନ ସୀମାରେ କେବେ ଦେଖା ଦେବ ନି । (ପ୍ରସ୍ଥାନ)

ଅସୀତା— ସାଗର ! ସାଗର ! (ଦୌଡ଼ି ଯାଇଛନ୍ତି) ଶୁଣିଯାଅ ସାଗର ! (ଫେରି) ଅତନୁ ! ଏତେ ହୃଦୟହୀନ ତୁମେ ହୋଇ ପାରିଲ ! ରକ୍ତ ମାଂସର ମୋହ ତୁମର ଏତେ ବେଶୀ ଯେ, ତୁମେ ସାଗର ଭଳି ବନ୍ଧୁକୁ ଆଘାତ ଦେଇ ପାରିଲ ?

ଅତନୁ – ପ୍ରିୟ-ବାନ୍ଧବୀ ଯେ ଆଜି ବନ୍ଧୁଙ୍କର ପ୍ରଶଂସାରେ ଏକାବେଳକେ ପଞ୍ଚମୁଖ ! ହା···ହା···ହା···ଚମତ୍କାର !

ଅସୀତା—ଇସ୍, ତୁମର ଏ ଅଧଃପତନ କାହିଁକି ହେଲା ଅତନୁ ? ମଣିଷ ବୋଲି ପରିଚୟ ଦବାକୁ ତୁମକୁ ଲଜ୍ଜାବୋଧ କରିବା ଉଚିତ ! ଆମର ସରଳ ଜୀବନରେ ଏ ଝଡ଼ ତୁମେ କାହିଁକି ଉଠେଇଲ ! କାହିଁକି ?···

ଅତନୁ—ଏ ପ୍ରଶ୍ନ ତୁମେ ନିଜ ମନକୁ ପଚାର ଅସୀତା ! ଗୋଟାଏ ସୁନାର ସଂସାରକୁ ଜାଳି ପୋଡ଼ି କରି ଛାରଖାର କରି ଦେଇଛ ସେ କଥା ତୁମେ ନିଜକୁ ପଚାର, ଉତ୍ତର ସେଇଠି ପାଇବ ! (ଚାଲି ଯାଉଥିଲେ) ସାଗରକୁ ଭୁଲି ପାରିବା ଭଳି ହୃଦୟ ଯଦି ତୁମର ନ ଥାଏ, ତା'ହେଲେ ମୁଁ ତୁମକୁ ସ୍ପଷ୍ଟ କହି ଯାଉଛି ଅସୀତା, ଅତନୁର ସଂସାରକୁ ଫେରିବାର ଆବଶ୍ୟକତା ତୁମର ନାହିଁ—ନା ! (ପ୍ରସ୍ଥାନ)

ଅସୀତା—ଅ-ଚ-ନୁ ! (ଆଖିରେ ଲୁହର ବନ୍ୟା, ନିର୍ବାକ୍ ଭାବେ ଛିଡ଼ା ହୋଇଛନ୍ତି । ଆସିଲେ ଡକ୍ଟର ଦାସ )

ଡ଼:ଦାସ—କଣ ହେଲା ମା ? ସେମାନେ ଗଲେ କୁଆଡେ ?—

ଅସୀତା—ଅସୀତାକୁ ଏକା ଛାଡ଼ି ସେ ଦୁହେଁ ଆପଣା ଆପଣା ବାଟରେ ଚାଲିଗଲେ ଅଜା ! କେହି କାହାର ମନ କଥା ବୁଝିବାକୁ ଚେଷ୍ଟା ବି କଲେ ନି···

ଡ଼:ଦାସ—ଅଚନୁ ଚଳେ ଛାଡ଼ିଗଲା···ମାନେ ?

ଅସୀତା—ତାଙ୍କ ସଂସାରରେ ମୋ ପାଇଁ ଆଉ ସ୍ଥାନ ନାହିଁ ଅଜା, ହୁଏତ···

ଡ଼:ଦାସ – (ଭାଙ୍ଗି ପଡ଼ିଲେ ମଧ୍ୟ ଦୃଢ଼ କଣ୍ଠରେ) What ? ସ୍ଥାନ ନାହିଁ ? ଅସମ୍ଭବ ! ଏ୍ା ହୋଇ ପାରେ ନା । ଡ୍ରାଇଭର ! ଗାଡ଼ି ବାହାର କର । (ପ୍ରସ୍ଥାନ କଲେ । ଅସୀତା କାନ୍ଦୁଥିଲେ)

—ପରଦା—

---

## —ଷଷ୍ଠ ଦୃଶ୍ୟ—

[ଅଘୋର ବାବୁଙ୍କ ଅଳନ୍ଦ । ରଙ୍ଗମଞ୍ଚ ଆଲୋକିତ ହେଲା ପରେ ଦେଖାଗଲା, ଯମୁନା ଦେଈ ବଡ଼ ବ୍ୟସ୍ତ ଭାବରେ ଘର ଭିତରୁ ବାହାରି ଆସିଲେ । ପାହାନ୍ତା ସମୟ । ]

ଯମୁନା—(ଗୃହ ଆଡ଼କୁ ଚାହିଁ) ପୁଅ ମୋର ଆଜି ଗଲା କୁଆଡ଼େ ? ଅନେଇ ଅନେଇ ରାତି ପାହିଲା···ସେ ଅଧିକା କ'ଣ ହେଲେ ଫେରିଲା ? ଉଃ, ବୋହୂ, ବୋହୂ ! ଏ ବୋହୂର କଣ ନିଦ ଭାଙ୍ଗୁଚି ହେଲେ···

ଶ୍ୟାମାଙ୍ଗୀ – କଣ ବୋଉ ? (ଆସିଛନ୍ତି)

ଯମୁନା—ହ'ଠା ଯାକ ଭାଇ କୁଆଡ଼େ ଗଲେ, ରାତି ଆସି ପାହିଲା ! କଣ ମୁଁ କରିବ କହିଲୁ ଭଲା ? ଖବର ତ କଚ୍ଛ ପାଇବାକୁ ନାହିଁ । ଘରେ କ'ଣ ଆଉ କିଏ ଅଛି ଯେ କୁଆଡେ ପଠେଇ ଦେବ ! ମୁଁ ଏବେ କରିବି କଣ ! ଏ ଘରଟା ଇମିତି କାହିଁକ ହେଲା ବୋହୂ ! ଅନ୍ତର କଣ ହେଲା ମତେ କହିଲୁ ?

ଶ୍ୟାମାଙ୍ଗୀ—ହବ ଆଉ କଣ ? ପିଲା ମନ ତ ଯେତେହେଲେ··· କାହାରି ଭଲ ମୁଣ୍ଡ ଖରାପ ନ ହବ କହିଲ ! ଯେତେ ସାଙ୍ଗ ହେଲେ ବି ସାଗର ସାଙ୍ଗରେ ଅସୀତାର···

ଯମୁନା— ନାହିଁ, ନାହିଁ ଅନ୍ତ ତ ମୋର ସେମିତିକା ପିଲା ନୁହେଁ । ଅସୀତାକୁ ଚିହ୍ନିବାରେ ତା'ର କଣ କେବେ ଭୁଲ ହେଇ ପାରେ ?

ଶ୍ୟାମାଙ୍ଗୀ—ତୁମେ ବୁଝୁନ ବୋଉ···(କଣ କହିବାକୁ ଯାଉଥିଲା-ବେଳେ ଯମୁନା ବାଧା ଦେଲେ)

ଯମୁନା—ତୁ କିଛି ଜାଣିନୁ ବୋହୂ, ହେଲେ ମୁଁ ସବୁ ଜାଣିଚି । ନଇତ ରାତିରେ ମୋ ପାଦ ଉପରେ ଅସାଁତାର ଲୁହ ଗଡ଼ି ପଡ଼େ । ସବୁବେଳେ କାନ୍ଦି କାନ୍ଦି ବୋହୂଟା ମୋର କଣ୍ଢା ହୋଇ ଗଲାଣି ! ମୁଁ କଣ କିଛି ବୁଝି ପାରୁ ନ ଥିବୁଚୁ ? ଅତି ମୁଣ୍ଡକୁ କଏ ଖରାପ କରି ଦେଇଚି ?...

ଶ୍ୟାମାଙ୍ଗୀ—ଏଇନେ ଲୁହ ଗଡ଼ାଇଲେ କଣ ହବ ! ଘରକୁ ଘରଣୀ, ଆଗ ପଛ ଟିକିଏ ଭାବିବ ନି; ପର ଲୋକଟା ସାଙ୍ଗରେ...

ଅଘୋର—(ଫେରି ଆସିଲେ । ରାତିଟା ସାରା କଟି ଯାଇଚି ତାଙ୍କର ଅତନୁକୁ ଖୋଜିବାରେ) ବୋଉ !

ଯମୁନା—କିରେ, ପାଇଲୁ ? ଦେଖା ହେଲା ? ପୁଅ ମୋର ଭଲ ଅଛି ତ ?

ଅଘୋର—ଅତନୁ ସାଙ୍ଗରେ ଦେଖା ହେଲା ନାହିଁ ବୋଉ ! ଅଫିସ୍‌ରୁ ଠିକ୍ ସମୟରେ ଯାଇଚି ବୋଲି ତାଙ୍କ ଅଫିସ୍ ଜମାଦାର ଖବର ଦେଲା । (ଶ୍ୟାମାଙ୍ଗୀ ଚାଲିଗଲେ)

ଯମୁନା—ଅଫିସରୁ ତ ଆସିଲା, ଗଲା ଫେରି କୁଆଡ଼େ ?

ଅଘୋର—ଖବର ନେଇ ବୁଝିଲି କ୍ଲବ୍‌କୁ ବି ଯାଇ ନି ।

ଯମୁନା—ସେଇଠୁ ? ପୁଅ ମୋର କୁଆଡ଼େ ଗଲା ଅଘି ?—

ଅଘୋର—କ୍ଲବ୍‌ରୁ କେତେବେଳେ କୁଆଡ଼େ ଯାଇଚି ସେ ଖବର ଆଉ କିଛି ମିଳିଲା ନି ବୋଉ ! ମୁଁ ଷ୍ଟେସନଯାଏ ଚାଲି ଯାଇଥିଲି, ଗାଡ଼ିରେ କୁଆଡ଼େ ଯାଇଚି ବୋଲି ବି କିଛି ଜଣା ପଡ଼ିଲା ନାହିଁ । ପୀତବାସ ବାବୁ ତ କହୁଥିଲେ, ତାର ଟୁର୍ ପ୍ରୋଗ୍ରାମ ବି କିଛି ନାହିଁ ।

ଯମୁନା—ଏଁ ! ତାହାହେଲେ ପୁଅ ମୋର କୁଆଡ଼େ ଗଲା ଅଘି ? ରାତିଟା ଯାକ ବୁଲିଲୁ, କୋଉଠି କିଛି ଖବର ପାଇଲୁ ନ ! ଅଭି ତ ମୋର ରାତିରେ କୁଆଡ଼େ ରହିଯିବାର କଥା ନୁହେଁ ! କ'ଣ ହେଲା ? ହାନବୋଡ୍କୁ ଆଉ ମୁଁ ରାତିଟାଯାକ ବାଡ଼େଇ ହଉଚି—ତୁ ବି କ'ଣ ହେଲେ ଆସୁରୁ ? ଉଃ, ମୁଁ କ'ଣ କରିବି ରେ ଅଘି ?

ଅଘୋର—ବୋଉ, ଗୋଟାଏ କଥା ଚତେ ମୁଁ କହି ନ ଥାନ୍ତି ; କାହିଁକି ନା ଶୁଣିଲେ ତୋ ମନ ବେଶୀ ଖରାପ ହବ···ହେଲେ ନ କହିଲେ ବି ଚଳୁନ !

ଯମୁନା—(ଶଙ୍କାକୁଳ ଭାବରେ)ଆରେ, କହ ରେ ଅଘି, ତୁ ମତେ କିଛି ଲୁଚା ନା ! କ'ଣ, ଅଭି ମୋର ଜୀବନରେ ଅଛି ତ ବାପା ? ତୋ' ଭାଇ ବଞ୍ଚିଚ ଟି ! (ପାଗଳୀ ପରି)

ଅଘୋର—(ବଡ଼ ବିବ୍ରତ ହୋଇ) ·ଛି, ବୋଉ ! ମୋ ରାଣ···ତୁ କାନ୍ଦ ନା, ଅଭିର ଦେହ କିଛି ଖରାପ ହେଇ ନ । ସେ ଯୋଉଠି ଥାଉ ପଛକେ ଭଲ ଅଛି ନିଶ୍ଚୟ ! ହେଲେ···

ଯମୁନା—ମତେ ଲୁଚା ନା ଅଘି ! ତୁ ମତେ କିଛି ଲୁଚା ନା । କହ, ନହେଲେ ମୁଁ ମୁଣ୍ଡ ବାଡ଼େଇ ଦେବି ! ହଁ, ତୋର ଆଗରେ ମୁଁ ମୁଣ୍ଡ ବାଡେଇ ଦେବି !

ଅଘୋର—ଅଭି ଅବାଟକୁ ଚାଲି ଯାଇଚି ବୋଉ, ଶୁଣିଲି···

ଯମୁନା—କ'ଣ ଶୁଣିଚୁ ଅଘି, କହ ରେ···

ଅଘୋର—ସେ ମଦ ଖାଉଚି !

ଯମୁନା—କ'ଣ କହିଲୁ ଅଘି ! ମଦ ! ଅଭି ମଦ ପିଉଚି ? ତୁ ମଦ ପିଅନୁ ତ ? ଆଉ କିଛି ଶୁଣିଲୁ ନ, ଏଇୟା ଶୁଣି ଆସିଲୁ ! (ରାଗରେ)

ଅଘୋର—ଶୁଣ୍ ବୋଉ, ମୁଁ ଠିକ୍ ଖବର ରଖିଚି ! ଅତି ମଦ ପିଇବା କଥା ତା'ର ଜଣେ ଦୁ' -ଜଣ ସାଙ୍ଗ ଜାଣନ୍ତି ! ମୁଁ ଠିକ୍ ଖବର ବୁଝିଚି ।

ଯମୁନା—ହଇରେ, ସାଗର ଜାଣିଚି ?···

ଅଘୋର—ଜାଣେ ବୋଲି ତ ମନେ ହେଲା ତା' କଥାବାର୍ତ୍ତାରୁ !

ଯମୁନା—ଅନ୍ତ ମୋର ସେଠି ନାହିଁ ତ ?···

ଅଘୋର—ନା ! ଗତ ବାରଟା ପରେ ମୁଁ ଫେରିଲି ସାଗର ପାଖରୁ ।

ଯମୁନା—ଆଜି ତେବେ ମଦ ପିଇ ସେ କ'ଣ ରେଳ ତଳେ ଶୋଇ ଗଲା ? ଅଘି, ଅନ୍ତ କ'ଣ ମୋର ଆଜି ଜୀବନରେ ନାହିଁ ? ବୋହୂ ! ବୋହୂ !

ସୁଭଦ୍ରା—(ଆସିଛି) ଅପାକୁ ଡ଼ାକ ଦେବ ମାଉସୀ । ହେଲେ ଅସୀତା ଅପା ତ ଘରେ ନାହିଁ !

ଯମୁନା—ଘରେ ନାହିଁ ?

ଅଘୋର—(ବ୍ୟସ୍ତ ଭାବରେ) କୁଆଡେ଼ ଗଲେ ? ସାନବୋହୂଙ୍କର ପୁଣି କ'ଣ ହେଲା !

ସୁଭଦ୍ରା—ଗ୍ଲେଟା ପିଲାଟିଏ ଖଣ୍ଡିଏ କ'ଣ ଚିଠି ନେଇ ଆସିଥିଲା, ଅସୀତା ଅପା ସେ ଚିଠି ପାଇଲା ସାଙ୍ଗେ ସାଙ୍ଗେ ସେଇ ପିଲାଟି ସାଙ୍ଗରେ ଚାଲିଗଲେ ! ମତେ କହିଲେ···

ଯମୁନା—କ'ଣ କହି ଯାଇଚି ? ଅନନ୍ତର ଚିଠି···

ସୁଭଦ୍ରା—ଚିଠିଟା କାହାର ମୁଁ ଜାଣେ ନାହିଁ, ହେଲେ ମତେ ଲାଗୁଚି ଅନନ୍ତ ଭାଇଙ୍କ କଥା କିଛି ! କହିଗଲେ, ଘଣ୍ଟାକରେ ଫେରିବେ !

ଯମୁନା—ଚାଲିଲୁ, ଚାଲିଲୁ, ମୁଁ ଦେଖେଁ—

ସୁଭଦ୍ରା—ସେ ଚାଲି ଗଲେଣି ମାଉସୀ !

ଯମୁନା—ଗୁଡ୍ ନାଇଟ୍, ମୁଁ ଆଗ ଦେଖେଁ। ଅଧି, ତୁ ବାପ ଯିବୁଟି, କୁଆଡ଼େ ସେ ଯାଉଚ ଦେଖ୍ । (ଫେରି) ନା, ନା, ରାତିଟା ସାରା ବୁଲି ବୁଲି ଥକିଚୁ, ଆଉ ଯିବୁ କୁଆଡେ! ଆ, ଘରକୁ ଆ—ସେମାନେ କୁଆଡ଼େ ଯିବେ ଯାଆନ୍ତୁ। ସମସ୍ତେ ତ ମନେ ମନେ ମୁରବୀ···କିଏ କାହା କଥା ଶୁଣୁଚି! ହଉ!
(ତାଙ୍କ ପଛେ ପଛେ ଅଘୋର ଓ ସୁଭଦ୍ରା ମଧ୍ୟ ଗଲେ)

—ପରଦା—

···०···

—ସପ୍ତମ ଦୃଶ୍ୟ—

[ସାଗରର ହୋଟେଲ୍ ଫ୍ଲାଟ। ହୋଟେଲରେ ଗୋଟିଏ ପରିଚ୍ଛନ୍ନ ବଖରା। ବୋଧହୁଏ ହୋଟେଲ ମାଲିକଙ୍କର ରୁଚିଜ୍ଞାନ ଅଛି। ପରଦା ଉଠିଲା ପରେ ଦେଖାଗଲା ଅସୀତା ଓ ସାଗର କଥାବାର୍ତ୍ତା କରୁଛନ୍ତି। ସାଗରକୁ ଦେଖିଲେ ମନେ ହେଉଛି, ଶାରୀରିକ ଓ ମାନସିକ ଚିନ୍ତାରେ ତାର ସ୍ୱାସ୍ଥ୍ୟ ଭଗ୍ନ ହୋଇ ଆସୁଛି। ଅସୀତା ଆଖିରେ ଲୁହ। ସେ କାନ୍ଦି କାନ୍ଦି ଲୋଟି ପଡ଼ୁଛି ଯେମିତି]

ସାଗର—କାନ୍ଦ ଅସୀତା, ଗଳା ଫଟେଇ ଖୁବ୍ କାନ୍ଦ। ହସ ତ ତୁମ ମୁହଁରେ କେବେ ଦେଖିବାକୁ ସୁଯୋଗ ମିଳିଲାନି, ଲୁହ ଟିକିଏ ବରଂ ଦେଖିଥାଏଁ ମୁଁ!

ଅସୀମା—ଆମ ଚେଷ୍ଟା ଜୀବନ କ'ଣ ଇମିତ ନଷ୍ଟ ହୋଇଯିବ ସାଗର ?

ସାଗର—ନା, ନା, ନଷ୍ଟ କାହିଁକି ହବ ! ସାଗର ପକ୍ଷରେ ନଷ୍ଟ ହୋଇଯିବ—ତୁମ ଜୀବନକୁ ସେ କେବେହେଲେ ନଷ୍ଟ ହବାକୁ ଦବ ନାହିଁ !

ଅସୀମା—ଚିଠି ଲେଖି ମତେ ଏଠିକି ଡକେଇ ଆଣିବାର ମତଲବ୍‌ଟା ତା'ହେଲେ ଶୁଣେଇ ଦିଅ ସାଗର, ମୋର ଆଉ ଧୈର୍ଯ୍ୟ ନାହିଁ !

ସାଗର—(ବ୍ୟଙ୍ଗ କରି) ବନ୍ଦୀ ଯେମିତି ନିଷ୍ପ୍ରଭ ହୋଇ ଆପଣାକୁ ବିଜେତା ହାତରେ ସମର୍ପଣ କରି ଦିଏ, ସେତିକି କରିବା ଛଡ଼ା କୌଣସି କଥାର ଜବାବ୍ ତୁମେ ଆଜି ପାଇବ ନି ଅସୀମା !

( ହସି ଉଠିଲେ )

ଅସୀମା—ସାଗର ! (ରାଗରେ)

ସାଗର—ଚମର ଲାଲ୍ ଆଖି ତମ ସୌନ୍ଦର୍ଯ୍ୟକୁ କେତେ ଗୁଣ ବଢ଼େଇଚି, ଆଇନାରେ ନ ଦେଖିଲେ ତୁମେ ବିଶ୍ୱାସ କରି ପାରିବ ନି ଅସୀମା ! ସତରେ, ରାଗିଲେ ତୁମେ ଭାରି ସୁନ୍ଦର ଦେଖାଯାଅ ।

ଅସୀମା—କୌଶଳରେ ପର ସ୍ତ୍ରୀକୁ ଡକେଇ ଆଣି ନିଭୃତରେ ତା'ର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବା···ସତରେ ସାଗର, ମୁଁ ତୁମଠୁଁ ଏ କଥା ଆଶା କରି ନ ଥିଲି ! ଅତନୁର ଖବର ଦେଇ ଚିଠି ଲେଖିଲ···ଅଥଚ ତୁମେ କ'ଣ ସେଇ ସାଗର······

ସାଗର—ହଁ, ମୁଁ ସେଇ ସାଗର ଯିଏ ଦିନେ ତୁମକୁ ଦେଇଥିଲା ନିର୍ବୋଧ ଅତନୁ ହାତରେ ! ମୁଁ ଜାଣେ ଅସୀମା, ତୁମେ ଏଇ କଥା ମୋତେ ପଚାରିବ ! ହେଲେ, ମୁଁ ଯଦି ତୁମକୁ ପଚାରେ···

ଅସୀତା—(ବାଧା ଦେଇ) ପସ୍ତର, ଜୀବନରେ ଯାହା ସବୁ ବାକି ଅଛି…ପଚ୍ଛରି ଯାଅ ସାଗର ! ଆଜି ତମର ସବୁ କଥାର ଉତ୍ତର ମୁଁ ଦେଇ ଯାଏଁ !

ସାଗର—ମୋର କୌଣସି କଥାର ଉତ୍ତର ଦବା ଆଗରୁ ତୁମେ ମନେ ରଖ, ତୁମେ ସେ ଯୁଗର ଜନକ-ନନ୍ଦିନୀ ସୀତା ନୁହଁ; ତୁରେ ବିଂଶ-ଶତାବ୍ଦୀର ଅସୀତା !

ଅସୀତା—ସାଗର !

ସାଗର—ମୋର ପ୍ରଶ୍ନ ମାତ୍ର ଗୋଟିଏ । ଅସୀତା, ତୁମେ ଦୁର୍ବଳ ହେଇ ପଡ ନାହିଁ ! ଅତନୁ କ'ଣ ପ୍ରକୃତରେ ତୁମକୁ ଗ୍ଲହେଁ ନା ?

ଅସୀତା—ମୁଁ ଅନୁମାନ କରୁଥିଲି, ତୁମେ ଠିକ ଏଇ କଥା ମତେ ପଚ୍ଛରିବ ! ହେଲେ, ଆମ ସ୍ୱାମୀ-ସ୍ତ୍ରୀଙ୍କର ବ୍ୟକ୍ତିଗତ କଥା ପଚ୍ଛରିବାର ଅଧିକାର ତମର ନାହିଁ ସାଗର !

ସାଗର—କିନ୍ତୁ ଏ ନିର୍ଯ୍ୟାତନା…ତୁମର ଏଇ ସୁନ୍ଦର-କୁଣ୍ଠି ଚେହେରା, ଅପମାନରେ କ୍ଷତ-ବିକ୍ଷତ ତୁମର ସାରା ତନୁ ମନ—ଯେ କ'ଣ ଅତନୁର Scholarly achievement ?

ଅସୀତା—ତୁମେ ଚୁପ୍ କର, ସାଗର ! ସୌନ୍ଦର୍ଯ୍ୟ ବର୍ଣ୍ଣନା ପରେ ମୋ ସ୍ୱାମୀ ନିନ୍ଦା ଅନ୍ତତଃ ଦୟା କରି ମତେ ଶୁଣାଅ ନାହିଁ !

ସାଗର—ଅତନୁ ଯେ ଏଡ଼େ ବଡ଼ ଜୁଗ୍ପିତ ଶୟତାନ୍ ହୋଇପାରେ; ନା, ଅସୀତା…କହିବାକୁ ମୁଁ ଭାଷା ପାଉ ନି !

ଅସୀତା—ନିଜ ବିଷୟରେ ତୁମେ ଅଚେତନ ହେଇ ପଡ଼ୁଛ ସାଗର ! ତୁମେ କ'ଣ ନିଜକୁ ଜଣେ ସାଧୁ, ମହାପୁରୁଷ ବୋଲି ଭାବୁଛ ?……

ସାଗର—'ମହାପୁରୁଷ'ର ସଂଜ୍ଞା ଅବଶ୍ୟ ମତେ ଭଲ ଜଣା ନାହିଁ; ତେବେ ଅତନୁ ପରି କାପୁରୁଷ ମୁଁ ନୁହେଁ ! ସେତେ ଦୁର୍ବଳତା ଥାଇ ତା'ର ତୁମ ଭଳି ସ୍ତ୍ରୀଅଛିକୁ ବିବାହ କରିବା ମୋଟେ ଉଚିତ ହେଇ ନ !

ଅସୀତା— ତୁମେ ମତେ ହସେଇବାକୁ ଚେଷ୍ଟା କରୁଚ ସାଗର, ହେଲେ ଲଜ୍ଜାରେ ମୋ ମୁଣ୍ଡ ତଳକୁ ହେଇ ଯାଉଚି !

ସାଗର— ସତ୍ତ, ସାଧ୍ୱୀ ବୋଲି ଯେତେ ପାର, ସେତେ ଅହଙ୍କାର ତୁମେ କର ଅସୀତା ! ହେଲେ ତୁମ ଗର୍ବର ଧନ ଆଜି ପଙ୍କରେ ଲୋଟୁଚି ! ତା'ର ଅସ୍ତିତ୍ୱ ସୁଦ୍ଧା ନାହିଁ —

ଅସୀତା—କ'ଣ ତୁମେ କହୁଚ ସାଗର ? ନା—ମୁଁ ଏ ନର୍କପୁରୀରୁ ଚାଲି ଯାଉଚି !

ସାଗର -ଯାଅ ଅସୀତା, ରାବଣର ସୁନାପୁରୀ ବା ନ ହେଲା— ସାଗରର ନର୍କପୁରୀରୁ ତୁମେ ଫେରିଯାଅ—ନଷ୍ଟ-ଚରିତ୍ର ଅତନୁ ସାମ୍ନାରେ ତୁମ ପାଇଁ ଅଗ୍ନି-ପରୀକ୍ଷାର ଦରକାର ପଡ଼ିବ ନାହିଁ !

ଅସୀତା—ମୋ ସ୍ୱାମୀଙ୍କୁ ନଷ୍ଟ-ଚରିତ୍ର କହି ଆପଣାର ଗୌରବ ବଢ଼େଇବାକୁ ଚେଷ୍ଟା କର ନା, ସାଗର ! ମୁଁ ଠିକ୍ ବୁଝି ପାରିଚି ତୁମେ କ'ଣ !

ସାଗର—ମୁଁ ଯଦି ଅତନୁର ସ୍ତ୍ରୀ ହେଇଥାନ୍ତି, ମୁଁ କ'ଣ କରନ୍ତି ଜାଣ ଅସୀତା ?...

ଅସୀତା—ସାଗର ପରି ଗୋଟାଏ ଲୋଫର୍‌କୁ ଦ୍ୱିତୀୟ ଥର ପାଇଁ ବିବାହ କରନ୍ତି ନିଶ୍ଚୟ ?

ସାଗର—ନା, ମୁଁ ଅତନୁକୁ ହତ୍ୟା କରନ୍ତି !

ଅସୀତା—ବନ୍ଦ କର ସାଗର, ବନ୍ଦ କର ! ତୁମ ମୁହଁ ଦେଖି ମନେ ହେଉଚି, ତୁମ ପରି ଶୟତାନ୍ ସବୁ ପାରିବ ।

ସାଗର—କେବଳ ତୁମରି ପାଇଁ ଅତନୁକୁ ମୁଁ ବଞ୍ଚିବାର ସୁଯୋଗ ଦେଇଚି । ତୁମର ଏଇ ଅସହାୟ ଆଖି, ନିଃସହାୟ ଜୀବନ ଅତନୁକୁ ବଞ୍ଚାଇ ରଖିଚି । ନିର୍ଲଜ—ନିର୍ଲଜ । ଜାଣିଚ ଅସୀତା, ଅତନୁ ଯେତେବେଳେ ତୁମକୁ ବାଧ୍ୟ ହୋଇ ବିଜୟପୁରରେ ତା' ଘରକୁ ଆସିଲା···

ଅସୀତା—ଈର୍ଷାରେ ତୁମେ ଜଳି ଯାଉଥିଲ ! ଏଇଆ··· ନା ?

ସାଗର—ନା, ମୁଁ ଭାରି ଖୁସି ହୋଇଥିଲି ! ତୁମ ଦୁହିଁଙ୍କ ମୁହଁରେ ହସ ଦେଖିବି ବୋଲି ହସି ହସି ମୁଁ ମୋର chance ଛାଡ଼ି ଦେଇଥିଲି । କାହିଁକି ? ମୁଁ ମନେ କରିଥିଲି, ଅତନୁ ତୁମ ଭଳି ଉଜ୍ଜଳ ମଣିଟିର ପ୍ରକୃତ ସଦ୍‌ବ୍ୟବହାର କରିବ···।

ଅସୀତା—ଥାଉ ସାଗର ! ବନ୍ଦ କର ତୁମେ—

ସାଗର—ସାଗର ରାସ୍ତାର ଭିକାରି, restaurantରେ ଖାଏ, ଧର୍ମଶାଳାରେ ଶୋଇପଡ଼େ । ଭାବିଥିଲି, ମାଙ୍କଡ଼ ବେକରେ ମୁକ୍ତାମାଳା ପରି ଅସୀତା ଖାଲି ଅବଶୋଷ କରିବ । ହେଲେ ଆଜ ମୁଁ ବୁଝୁଚି, ଅତନୁ ହାତରେ ପଡ଼ି ତୁମର ଭବିଷ୍ୟତ ନଷ୍ଟ ହୋଇ ଯାଇଚି—

ଅସୀତା—ସେ ନଷ୍ଟ-ଭବିଷ୍ୟତକୁ ତୁମେ କ'ଣ ଗୌରବୋଜ୍ଜ୍ୱଳ କରି ପାରିବ ସାଗର ? କୁହ—

ସାଗର— ନିଶ୍ଚୟ ପାରିବ । କାହିଁକି ନୁହେଁ ଅସୀତା ?

ଅସୀତା—ଯଥେଷ୍ଟ କହୁଚ, ସାଗର ! ମଣି, ମୁକ୍ତା ଯାହାହେଲେ ବ ଅସୀତା ପର-ସ୍ତ୍ରୀ, ପର ଘରର ବୋହୂ । ସତରେ ସାଗର ! ଅଧଃପତନ ଅତନୁର ହେଇ ନ, ହେଇଚ ତୁମର । ତୁମେ ଏତେ ତଳକୁ ଖସି ଯାଇଚ ଯେ, ତୁମକୁ ଉପରକୁ ଉଠାଇ ଆଣିବାକୁ କୌଣସି ଶକ୍ତି ବୋଧହୁଏ ସାରା ପୃଥିବୀରେ ନାହିଁ ।

ସାଗର—ସମବେଦନାରେ ମୋ ଗୁନ୍ଥ ଫାଟି ଯାଉଚ ଅସୀତା ! ହେଲେ କହିବାକୁ ମୋର ଭାଷା ନାହିଁ । ମୋ ବ୍ୟଥା ତୁମେମାନେ କେହି ବୁଝିବ ନାହିଁ । ମୁଁ କ'ଣ ମଣିଷ ନୁହେଁ ? ମୋର କ'ଣ ରକ୍ତ ମାଂସର କ୍ଷୁଧା ନ ଥିଲା, ନା ନାହିଁ ? ଧନ ନ ଥିଲେ ବ ମଣିଷର ମନ କ'ଣ ମୋର ନାହିଁ ? ହେଲେ, ମୁଁ ଆଖି ବୁଜି ଦେଇଥିଲି । କାହିଁକି ? ତମ ମୁହଁରେ ହସ ଟିକଏ ଦେଖିବାକୁ—ସେଇ ହସ ଫେରାଇ ଆଣିବାକୁ— (ଠିକ୍ ଏତିକିବେଳେ ଭିତର ପଟ ପରଦା ଆଡ଼େଇ ଆସିଲେ ଅତନୁ । ହାତଗୋଡ଼ ଚେହେରା, ମୁଣ୍ଡରେ ପଟି ଭିଡ଼ା ହୋଇଛି, ଭାରି ଦୁର୍ବଳ । ଆଖିରେ ଯେମିତି ଥିଲା ଅଭିମାନର ନିଆଁ । )

ଅତନୁ—ଚେଷ୍ଟା କର, ସାଗର ! ଏଇ ହଉଚି ସୁବର୍ଣ୍ଣ ସୁଯୋଗ !

ଅସୀତା—କିଏ ? ତୁମେ ! କ'ଣ ହେଇଚ ତୁମର ?

( ପାଖକୁ ଦୌଡ଼ିଗଲେ ମାତ୍ର ଅତନୁ ହାତରେ ଆଡ଼େଇ ଦେଲେ )

ଅତନୁ—ଛୁଅଁ ନାହିଁ, ଛୁଅଁ ନାହିଁ ମତେ ଅସୀତା ! ମତେ ଛୁଇଁବାର ଅଧିକାର ତୁମର ନାହିଁ ! କି ଆକୁଳତା ନେଇ ତୁମେ ସାଗରର ହୋଟେଲ୍‌କୁ ଛୁଟି ଆସିଚ—ମୁଁ ଜାଣେ ! ଏ ସବୁ ଜାଣିଲା ପରେ ମୋ ଉପରେ ତୁମର କୌଣସି ଦାବୀ ରହି ପାରେ ନା—!

ଅସୀତା—କ'ଣ ହେଲା ତୁମର ? କାହିଁକି ମୋର ଏ ସର୍ବନାଶ କଲ ସାଗର ? ଅତନୁ ! ସାଗର !

ସାଗର—ଶୁଣ ଅସୀତା, କାଲି ରାତି ବାରଟା ପରେ ଅଘୋର ଭାଇଙ୍କଠୁଁ ଖବର ପାଇଲି ଅତନୁ ବାବୁ ଅନ୍ତର୍ଦ୍ଧାନ । ନିଜେ ବାହାରି ପଡ଼ିଲି ଖବର ନେବାକୁ । ଭାଗ୍ୟ ଭଲ—ମୁଁ ପହଞ୍ଚି ଗଲି । ନହେଲେ ନର୍ଦ୍ଦମାରେ ପଡ଼ି ଅତନୁର ଜୀବନ ଯାଇଥାନ୍ତା ! ଏତେ ମଦ ପୁଣି ମଣିଷ ଗିଳିପାରେ ! ଛି !

ଅତନୁ—ସା-ଗ-ର !

ଅସୀତା—ତମେ ମଦ ପିଉଚ ଅତନୁ ?···

ଅତନୁ—ବେଶ୍ କଲି—ମୋ ଇଚ୍ଛା !

ଅସୀତା—ତମ ଇଚ୍ଛା ଉପରେ ଆଜି ଗୋଟିଏ ମହାମୂଲ୍ୟ-ଜୀବନ ନିର୍ଭର କରୁଚି- ସେ ଦାୟିତ୍ୱ ତୁମର ଅଛି ବୋଧହୁଏ ?

ଅତନୁ—ସ୍ୱାମୀ ନିକଟରେ ଧରା ପଡ଼ିଯିବା ଆଗରୁ ସୁନ୍ଦରୀ ତରୁଣୀମାନେ ଆପଣାକୁ ଭାରି ବୁଦ୍ଧିମତୀ ବୋଲି ଛଳନା କରନ୍ତି ! କଅଁଳ କଥା କହି ଖୁବ୍ ଚେଷ୍ଟା କରନ୍ତି ନିଜକୁ ବଞ୍ଚେଇବାକୁ !

ଅସୀତା—ଚୁପ ହୁଅ ଅ-ତ-ନୁ ! (ନିର୍ବାକ୍, ନିସ୍ପନ୍ଦ ହୋଇଗଲେ ଯେମିତି)

ସାଗର—ଆମ ସମସ୍ତଙ୍କୁ ଦରିଦ୍ର କରିଦେଇ, ତୋ ଭିତରୁ ସେ ଧନର ସେଇ ଅସଲ ମଣିଷଟି କୁଆଡ଼େ ଚାଲିଗଲା ଅତନୁ ? ଏତେ ବଡ଼ scholar, ଅସୀତା ପରି ଝିଅଟିକୁ ପାଇ ମଧ୍ୟ ତୁ ସୁଖୀ ହୋଇ ପାରିଲୁ ନି ? ସନ୍ଦେହରେ ସନ୍ଦେହରେ ତୋ ଛାତି, ମନ, ହୃଦୟ ସବୁ ଜଳିଗଲା ? ଅସୀତାର ସେଇ ଅତି ପବିତ୍ର

ମିନ୍ଦୁର ବନ୍ଧୁଟି ଖାତିରରେ ହିଁତ ମୁଁ ବଞ୍ଚିବାର ସୁଯୋଗ ଦେଇଛି ଅତନୁ ! ନହେଲେ ସେଇ ନର୍ଦ୍ଦମା ଭିତରେ କାଳି ତୋର ଅନ୍ତିମ ଶଯ୍ୟାର ବ୍ୟବସ୍ଥା ହୋଇଥାନ୍ତା ! ଯା, ଅସୀତାକୁ ନେଇ ଘରକୁ ଫେରିଯା—

ଅତନୁ—ଘରକୁ ଫେରି ଯିବାର ଅବକାଶ ଆଜି ଅସୀତାର ନାହିଁ, ସାଗର ! ଅସୀତା ଆଜି ଅସୀତା ହୋଇନାହିଁ—ସେ ବର୍ତ୍ତମାନ ପତିତା !! ଆମ ଜୀବନର ସବୁ ବନ୍ଧନ ତୁଟିଯାଇଛି ! (ଖାଉଥିବା ଅଧା ସିଗାରେଟ୍‌କୁ ପାଦରେ ଦଳି)

ଅସୀତା—ଉଃ, ଅତନୁ ! ତୁମେ ମତେ କହିଲ 'ପତିତା' ?

ସାଗର—ଅସୀତାକୁ ସାଙ୍ଗରେ ନେଇ ଯା ଅତନୁ ! ତା'ର ଅଯତ୍ନ କଲେ ତୁ ଅନୁତାପରେ ମରିଯିବୁ । ପାପ ବୋଲି ଯାହା କହୁଥାଏ, ଧର୍ମ ଦୁଆରେ ତୁ ସେଇ ପାପର ଭାଗିଦାର୍ ହବୁ ! ଯା, wish you good luek !

ଅତନୁ—Good luck ? ଅସୀତାକୁ ନେଇ ଫୁର୍ତ୍ତିରେ ଯୌବନ ଉପଭୋଗ କର ସାଗର ! ମୁଁ ବେଶ୍ ଚାଲି ଯାଇ ପାରିବ । ସ୍ତ୍ରୀକୁ ସଙ୍ଗିନୀ କରି ମୁଁ ବେଶ୍ ଚାଲି ଯାଇ ପାରିବ—ନ ହେବ ବା ତୁ ମୋର ବନ୍ଧୁ, ମୋ ସ୍ତ୍ରୀକୁ ସ୍ତ୍ରୀ ବୋଲି ଗ୍ରହଣ କରିନେଲୁ, କ୍ଷତି କ'ଣ ! ଜଣେ ନଷ୍ଟ-ଚରିତ୍ର ଲମ୍ପଟ ମତେ ଦଉଛି ମାତିଶିକ୍ଷା ! (ଚାଲି ଯାଉଥିଲେ)

ସାଗର—ଜଣେ ଉଚ୍ଚ ଶିକ୍ଷିତ ମାତାଲ ମତେ ପୁଣି କହୁଛି ନଷ୍ଟ-ଚରିତ୍ର ! ହା···ହା···ହା ··(ଜୋରରେ ହସିଲେ)

ଅସୀତା—ଉଃ, ସାଗର !! (ଚିତ୍କାର କରି ପଡ଼ି ଯାଉଥିଲେ)

—ଉପ—

# ତୃତୀୟ ଅଙ୍କ

## —ପ୍ରଥମ ଦୃଶ୍ୟ—

[ ପୀତବାସବାବୁଙ୍କ ଘର । ପରଦା ଉଠିବା ସାଙ୍ଗେ ସାଙ୍ଗେ ଦେଖାଗଲା ବାହାରୁ କଥାବାର୍ତ୍ତା କରୁ କରୁ ଆସିଲେ ପୀତବାସ ବାବୁ ଓ ଶଙ୍କରବାବୁ । ]

ପୀତବାସ—ଭଲ ହୋଇଚି, ଯାହା ହୋଇଚି ଖୁବ୍ ଭଲ ହୋଇଚି । ସବୁ ଦିଗରୁ ମୁଁ ଏଥର ଲିଷ୍ଟେନ୍ସ । ଅଫିସ୍ ପାଖରୁ ମତେ ଧନ୍ଦା ଧରି ଆଣିଲ ଯେ ଶଙ୍କର ବାବୁ ! ତୁମେ କ'ଣ ଭାବୁଥିଲ ମୁଁ ଆତ୍ମହତ୍ୟା କରିଦେବି ? ନା, ମୁଁ ଆତ୍ମହତ୍ୟା କରିବି କାହିଁକି ? କୌଣସି ମତେ ଆଉ ଆଠ ଦଶଟା ମାସ ଭଲରେ ଭଲରେ ମାରି ଦେଇଥିଲେ ଖୁସିରେ ପେନ୍‌ସନ୍ ଗଣ୍ଡାକ ନେଇ ଘରକୁ ଆସିଥାନ୍ତି···ନ ହେଲା ଏବେ ସେ ଯୋଗ ନାହିଁ ; ଏଥିପାଇଁ ମୁଁ ଆତ୍ମହତ୍ୟା କରିବି କାହିଁକି ?

ଶଙ୍କର—ହାକିମଙ୍କର କଣ ଇମିତି ହୋଇଗଲା କହିଲେ ଆଜ୍ଞା ? ଏଡ଼େ ଭଲ ମଣିଷ, ଶେଷରେ ଆପଣଙ୍କୁ ବି ସନ୍ଦେହ କରି ସସ୍‌ପେଣ୍ଡ୍ କରିଦେଲେ ! ଉଃ, କି ଦୁର୍ଯୋଗ !

ପୀତବାସ—ତାଙ୍କର କିଛି ଦୋଷ ନାହିଁ ଶଙ୍କର ବାବୁ ! ବୁଢ଼ା ବୟସରେ ମୋର ତ ବଦନାମ ହବାର ଥିଲା, ତାଙ୍କୁ ମୁଁ କାହିଁକି

ଦୋଷ ଦେବ ! ସବୁ ଭାଗ୍ୟ, ବୁଝିଲ ଶଙ୍କର ବାବୁ—ଭାଗ୍ୟ ଛଡ଼ା ମଣିଷର ଅନ୍ୟ ପଥ ନାହିଁ !

ଶଙ୍କର—ହଁ, ଆଜ୍ଞା ! ଭାଗ୍ୟର ଖେଳ ସବୁ ।

ପୀତବାସ—ହେଲେ ଏତେ ଭାଗ୍ୟବାଦୀ ମୁଁ ନ ଥିଲି ଶଙ୍କର ବାବୁ ! ଉଦ୍‌ଯୋଗ ଉପରେ ସବୁ ବେଳେ ମୋର ଆସ୍ଥା ଥିଲା । କିନ୍ତୁ ସେଇ ଭାଗ୍ୟ ମତେ ଆଜ ଏମିତି ଠକିଦେଇଚି ଯେ ମତେ ଯେମିତି ଲାଗୁଚି···ଭାଗ୍ୟ ଆଉ ଭଗବାନ ଏ ଦୁଇଟା ଅଲଗା । ଭାଗ୍ୟର କରଣି ଉପରେ ଭଗବାନଙ୍କର କୌଣସି ହାତ ନାହିଁ ।

ଶଙ୍କର—ବଡ଼ ଦୁଃଖରେ ଆପଣ ପଡ଼ିଗଲେ ଆଜ୍ଞା, ବୁଢ଼ା ବେଳେ ବହୁତ ବିପଦ ଆପଣଙ୍କ ଉପରେ ପଡ଼ିଲା ।

ପୀତବାସ—ଏ ବିପଦ ଖାଲି ମୋର ନୁହେଁ—ଗରିବ ହତଭାଗ୍ୟ କିରାଣୀକୁଳ ଯେମିତି ଏ ଦୁର୍ଯୋଗ ସହିଚି ଅତି ଘନିଷ୍ଠ ଭାବରେ ପରିଚିତ । ମୁଁ ଖାଲି ଏତିକି ଭାବୁଚି ଶଙ୍କର ବାବୁ ! ମୋ ଝିଅଟି ଯଦି ବାହା ହୋଇ ଯାଇ ନ ଥାନ୍ତା, ମୁଁ ଏଇନେ କ'ଣ କରିଥାନ୍ତି ? ହୁଏତ ସତକୁ ସତ ମତେ ଆତ୍ମହତ୍ୟା କରିବାକୁ ପଡ଼ିଥାନ୍ତା ! ହେଲେ, ଆଉ ସେ ଭୟ ନାହିଁ—ଏ ବୟସରେ ସେ ମହାପାପ ଅର୍ଜିବାର ଭୟ ଆଜି ମୋର ନାହିଁ ।

ଶଙ୍କର—ଅନ୍ୟମାନଙ୍କ ପରି ମୁଁ ଆଜ ମୋ ମନ କଥା ଖୋଲି କହୁଚି ଆଜ୍ଞା, ସାଗର ବାବୁଙ୍କ ଉପରେ ମୋର ମଧ୍ୟ ବିଶେଷ ଭଲ ଧାରଣା ନ ଥିଲା । କିନ୍ତୁ ଆପଣଙ୍କ ଝିଅ ବିଭାଘରରେ ମୋର ସେ ଧାରଣା ବଦଳି ଯାଇଚି । ପର ପୁଣି ପର ପାଇଁ ଏତେ ତ୍ୟାଗ ସ୍ୱୀକାର କରିପାରେ !

ପୀତବାସ—ପର ! (ହସି) ପର କିଏ ଶଙ୍କରବାବୁ ? ସାଗର ତ ମୋ ପୁଅ—ତାକୁ ମୁଁ ଅନ୍ୟ ଆଖିରେ ଦେଖେ ନା। ବୃନ୍ଦାକୁ ପର ଘରକୁ ପଠେଇବା ସକାଶେ କ'ଣ ସେ କରିତ ତୁମେ କଳ୍ପନା କରି ପାରିବ ନ। ( ଜିଜ୍ଞାସୁ ଦୃଷ୍ଟିରେ ଚାହିଁଲେ ଶଙ୍କର ବାବୁ ) ଜାଣିଚ, କ'ଣ କଲା ସେ ?—

ଶଙ୍କର—ଶୁଣିଚି ଆଜ୍ଞା, କରଜ ଦାମ୍ କରି—

ପୀତବାସ—ଖାଲି ସେତିକ ନୁହେଁ; ଭଉଣୀଟି ପାଇଁ ନିଜର ଯାହା କିଛି ଥିଲା, ତା'ର ଯଥାସର୍ବସ୍ୱ···ସାଇକେଲଟି ପର୍ଯ୍ୟନ୍ତ ବିକି କରି ଦେଇଚି । ତାକୁ ତୁମେ ପର ବୋଲି କହୁଚ ? ସାଗର ଚେଷ୍ଟା ନ କରିଥିଲେ, ସେମିତି ସଚ୍ଚରିତ, ବିଦ୍ୱାନ୍ ଜ୍ୱାଇଁଟିଏ ହୁଏତ ମୁଁ ପାଇ ନ ଥାନ୍ତି !

ଶଙ୍କର—ମେଳେ ଆମ ଅଚ୍ୟୁତ ବାବୁଙ୍କ ମତିଗତି ଯେ ହଠାତ୍ କାହିଁକି ବଦଳିଗଲା ମୁଁ କିଛି ବୁଝି ପାରୁନି ! ସାଗର ବାବୁ ତ ଆଉ ମୋତେ ତାଙ୍କ ପାଖକୁ ଯାଆନ୍ତି ନାହିଁ, ତା'ଛଡ଼ା ଆପଣ ବି ଶୁଣିଥିବେ—ଅଚ୍ୟୁତ ବାବୁ ମଦ ପିଉଚନ୍ତି । ମଦ ପିଇଲେ ମଣିଷର ଅବସ୍ଥା କେମିତି ହୁଏ ?

ପୀତ ବାସ—ସବୁ ସେଇ ଭାଗ୍ୟ ! (କପାଳରେ ହାତଦେଇ)

ଶଙ୍କର—କିଛି ଦୋଷ ନ ଥାଇ ଆପଣଙ୍କୁ ଦୋଷୀ ମନେ କଲେ । ସବୁବେଳେ ସମସ୍ତଙ୍କୁ ସନ୍ଦେହ ଆଖିରେ ଦେଖୁଚନ୍ତି । ଆମର ସବୁ ଆଉ ବୃନ୍ଦାବତୀକୁ ଆଶା ଭରସା ନାହିଁ ଆଜ୍ଞା, କେଉଁ ମୁହୂର୍ତ୍ତରେ ଯେ କ'ଣ ହୋଇଯିବ···ଗୁଡ଼ାଏ ପିଲା ଆଜ୍ଞା, ସମସ୍ତେ ଭାସିଯିବେ । ଏତେ ଦିନର ଚାକିରି ··

ପୀତବାସ—କଷ୍ଟ ହବ ନାହିଁ ଶଙ୍କର ବାବୁ, ନ ହବା କଥା କଷ୍ଟ ହବ ନାହିଁ । ଯାହା ହବା କଥା, ଠିକ୍ ସେଇୟା ହବ ! ହଉ, ତୁମେ ଆସ ।

ଶଙ୍କର—ହଉ ଅଜ୍ଞା ! (ପ୍ରସ୍ଥାନୋଦ୍ୟତ)

ପୀତବାସ—ଶଙ୍କର ବାବୁ ! ଶୁଣ···(ଆର୍ଦ୍ର କଣ୍ଠରେ) ପାଶୋର ଦବ ନାହିଁ, ଶଙ୍କର ବାବୁ ! ଏକାଠି ଏତେ ବର୍ଷ କାମ କରିଛୁ—କେତେ ସ୍ନେହ, କେତେ ମମତା··କେତେବେଳେ କମିତ ଟିକିଏ ଭୁଲ ଆସୁଥିବ !

ଶଙ୍କର—(ହାତ ଧରି ପକାଇ) କ'ଣ ଆପଣ କହୁଚନ୍ତି ଅଜ୍ଞା ? ଆପଣଙ୍କୁ ସସ୍‌ପେଣ୍ଡ କରିଚନ୍ତି ବୋଲି କ'ଣ ଭୁଲିଯିବି କୁଆଡ଼େ ଭୁଲ ଯାଉଚି ? ଈଶ୍ୱର ହଉ । ଏତିକି···ହଇରଣ ହବାକୁ ପଡ଼ିବ ଗୁଡ଼ାଏ ଦିନ—ନ ହେଲେ···

ପୀତବାସ—ଈଶ୍ୱର···! ଲଢ଼ିବାକୁ ଆଉ ବଳ ବୟସ ନାହିଁ ଶଙ୍କର ବାବୁ ! ସବୁ ହାରି ଗୁହାରି ଯାହାର (ଉପରକୁ ହାତ ଉଠାଇ) ଈଶ୍ୱର-ବେଦୀ ତଳେ ଅଜାଡ଼ି ଦେଇଥିଲି, ସେ ତ ମତେ ଉଜାଡ଼ି ଦେଲା···ଆଉ କି ଈଶ୍ୱର ! ଈଶ୍ୱର ଏ ଦୁନିଆରେ ନାହିଁ ! ହଉ, ତୁମେ ଯାଅ—(ଶଙ୍କରବାବୁ ଚାଲିଗଲେ ।ଗଭୀର ଉତ୍ତେଜନାରେ କଣ୍ଠ ଯେମିତି ଥରି ଉଠିଲା ପୀତବାସ ବାବୁଙ୍କର)

(ସ୍ୱଗତ)ଈଶ୍ୱର ! ଈଶ୍ୱରକ ହେଇ ଯେବେ ପ୍ରକୃତ ଦୁଃଖୀର ଦୁଃଖରେ ଟିକିଏ ଲୁହ ନ ଗଡ଼େଇଲେ, ସେ ଆଉ ପୁଣି କି ଈଶ୍ୱର ! (ହସି ଉଠିଲେ ଯେମିତି ଗଭୀର ଉନ୍ମାଦନାରେ—କଣ୍ଠରେ ତାଙ୍କର ଈଶ୍ୱରଙ୍କ ପ୍ରତି ଚରମ ଅଭିମାନ ପରିସ୍ଫୁଟ)

ଝୁରୁ ବୋଉ ! ଝୁରୁ ବୋଉ ! (କେହି ଶୁଣିଲେ ନାହିଁ) କୁଆଡ଼େ ଗଲ ଝୁରୁ ବୋଉ ?

ଅଳକା—(ଚରଚର ହୋଇ ଭିତରୁ ଆସିଲେ, ମୁହଁରେ ତାଙ୍କର ଆନନ୍ଦର ଜୁଆର ଯେମିତି ଉଚ୍ଛୁଳି ଉଠୁଥିଲା) କଅଣ କ ? ପଡ଼ଶା ଘରୁ ପାଟି ଶୁଣି ଦଉଡ଼ିଚ ।

ପୀତବାସ—ଶୁଣ, ଝୁରୁ ବୋଉ !···

ଅଳକା—(ବାଧା ଦେଇ) ତମେ ମୋଠୁଁ ଶୁଣ ! ଝୁରୁର ପୁଅଟିଏ ହୋଇଚ ! ତମ ନାତି, ମୋ ନାତି—ଆମ ନାତି ! (ଖୁସିରେ ଯେମିତି ଭାଷା ତାଙ୍କର ନାଚି ଉଠୁଥିଲା । ଜୀବନରେ ଏତେ ସୁଖର ସେ ଯେମିତି ହଠାତ୍ ଏଇ ପ୍ରଥମ ହୋଇଲେ) ଏଇ ଚିଠି ନିଅ । ସେଇ କଥା ଅଯୀତା ମା'କୁ ମୋର କହିବାକୁ ଯାଇଥିଲି ଯେ, ତମେ ଇଆଡେ ହୁରି ପକେଇଚ···

ପୀତବାସ—(ଅଳକା ଅଣନଶ୍ବାସୀ ହୋଇ କହି ଚାଲିଛନ୍ତି ଦେଖି) ନାତି ହୋଇଚ ! ହେଲେ ସେଇ ନାତିଟିକି ଚେନ୍‌ଟିଏ ଗଢ଼େଇ ଦବାକୁ ଏ ହତଭାଗ୍ୟ ଅଜା ହାତରେ ଗଡ଼ା ମୂଲ ବି ନାହିଁ ! (କଣ୍ଠ ଯେମିତି କିଏ ଚିପି ଧରିଲା) ହସ ଆଉ କାନ୍ଦର ବିଚିତ୍ର ଦୁନିଆଁ ଭିତରେ ମୁଁ ଯେମିତି ଗୋଟାଏ ନିର୍ଜୀବ ଲାଇଟ୍-ପୋଷ୍ଟ—ବଞ୍ଚାଖୁଣ୍ଟ । ହେଲେ ମୋ ଖୁଣ୍ଟରେ କେବେ ହେଲେ ବତି ଜଳି ପାରିଲାନି—ଦୁଃଖ ମୋର ଏଇଠି ଝୁରୁ ବୋଉ ! ତମେ ହସୁଚ, ହେଲେ ମୋ ଦୁଃଖ ଏଇଠି !

ଅଳକା – କିଛି ନ ଦେଲେ ନାହିଁ ପଛେ, 'ଖାଲି ହାତରେ ତୁମେ ଯାଅ ! କୋଇଁ କ'ଣ ମନେ କରିବେ ? ଆଉ ଝୁରୁ ବି କହିବ,

"ବାପା ଟିକଏ ଆସିଲେ ନ" ! ତା'ର ପନ୍ଦ୍ରଲ୍ ପୁଅ, କେତେ ଖୁସିରେ ସିଏ ତମ ବାଟ ଅନେଇ ବସିଥିବ ! ତୁମେ କାଲି ଯାଅ, ଦେଖି ଗୁଣ୍ଡି ସବୁ ଖବର ବୁଝି କେଉଁଟି ଆସିବ ।

ପୀତବାସ—ଯିବ ଲୁହୁ ବୋଉ, ଯିବ ··

ଅଳକା – ମୋର ଏଇ କାନ ଫୁଲ ଯୋ'ଟି ନେଇ ଯିବ –ତାକୁ କହିବ, ଆଉ ତ କିଛି ନାହିଁ, ଏଇଥିରେ ତା' ପୁଅ ବେକକୁ ଚେନ୍‌ଟିଏ ଗଢ଼େଇ ଦବ । ଗହଣା ନାଇବାକୁ ମୋର ଆଉ କ'ଣ ବୟସ ଅଛି ! (ଖୋଲି ମନରେ କହି ଚାଲିଛନ୍ତି । ପୀତବାସ ବାବୁ ସୁଯୋଗ ବି ପାଉ ନାହାନ୍ତି ତାଙ୍କ କଥା ଶୁଣେଇବାକୁ)

ପୀତବାସ—ସବୁ ହବ ଲୁହୁ ବୋଉ, ସବୁ ହବ । ଆଉ କିଛି ଭାବନା ନାହିଁ ! ଲୁକସାଟା ଗଲାଣି ଯେତେବେଳେ ମୋର ଏଥର ସବୁବେଳେ ଛୁଟି, ବହୁତ ଫୁରୁସତ୍ —

ଅଳକା – (ଆକାଶରୁ ଖସି ପଡ଼ିଲେ ଯେମିତି) ଲୁକସା ଗଲା !

ପୀତବାସ—ହଁ, ଲୁହୁ ବୋଉ, ତମର ଆଉ ରାନ୍ଧିବାକୁ ତରତର ନାହିଁ, କି ମୋର ବି ଆଉ ଅଗାଧୁଆ ଅଖିଆ ଫାଇଲ୍ ଧରି ଦୌଡ଼ିବାକୁ ନାହିଁ···ହାକିମ ମତେ ସସ୍‌ପେଣ୍ଡ୍ କରିଚନ୍ତି ! ଏକ ପ୍ରକାର ଭଲ ଇ' ହୋଇଚି । ବୁଢ଼ା ଲୋକ, ବିଶ୍ରାମ ତ ପୁଣି ଦରକାର !

ଅଳକା—ତମକୁ ଲୁକସାରୁ କାଢ଼ି ଦେଲେ ? ପେନସନ୍ ତା'ହେଲେ ପାଇବ ନାହିଁ—?

ପୀତବାସ—ନା, ପାଇବନି କାହିଁକି ? ଆୟୁ ଥିଲେ ମିଳିବ । ମୋର ତ ଦୋଷ କିଛି ନାହିଁ ! ହାକିମ ତଗାଗି ଲୋନ୍ ବାଣ୍ଟିବାକୁ ଗଲେ, ହିସାବ ଭୁଲ ହେଲା; ମୋର ଦୋଷ କ'ଣ !

ଅଳକା—କ'ଣ ହୋଇଛି ମତେ କୁହ ଭଲା !—

ପୀତବାସ—ହବ ଆଉ କ'ଣ ! ବନ୍ଟୁ କୁଆଡ଼େ ଗଲା ?

ଅଳକା—ସାଗର ଡ଼ାକେଇଥିଲା ଯାଇଚି, ଆସୁଥିବ । ହେଲେ ତମର କ'ଣ ହେଲା ! ତମ ଭଳିଆ ଲୋକକୁ ସରକାର କାମରୁ କାଢ଼ି ଦେଲେ ! ତମ ଭଳିଆ ଲୋକର ପେନସନ ଗଣ୍ଡାକ ସେ ଦେବେ ନାହିଁ ?

ପୀତବାସ—ଆଶା ତୁମେ ରଖ ଗୃହ ବୋଉ ! ଦୀପାଳି-ଅମାବାସ୍ୟାରେ ତୁମେ ବି ଦୀପଟିଏ ବସାଅ ଘରୁ ବୋଉ, ତେଲ ଟାଉ କି ନ ଥାଉ ! (ଦୀର୍ଘ ନିଶ୍ୱାସ ଛାଡ଼ିଲେ, ବାହାରେ ଯାନ୍ତି ଶୁଭିଲା ବନ୍ଟୁର )

ବନ୍ଟୁ— ବୋଉ ! ବୋଉ ! (ଡ଼ାକି ଡ଼ାକି ବାହାରୁ ଆସିଲ୍ଲା) ବାପା, ମୋର ଚାକିରି ହୋଇଚି ! ସାଗର ଭାଇ କରେଇ ଦେଇଚନ୍ତି । କାଲିଠୁଁ କାମକୁ ଯିବି । ହୋଇନି, ଆଗକୁ ବି ମତେ କୋଡ଼ିଏ ଟଙ୍କା ମିଳିଚି—ନେ ନେ ବୋଉ ! ଅପାର ଠିକ ପୂଅ ପେନ୍ସିଲ ପେଣ୍ଟ୍ କୁରୁତା ପଠେଇବା । ହୋଇଚି, ସାଗର ଭାଇ ବି ଆସୁଚନ୍ତି ଯେ, ଶକ୍‌ସାରୁ ଓହ୍ଲେଇ ।

ପୀତବାସ—(ସବୁ ଯେମିତି ମନ୍ତ୍ର-ମୁଗ୍ଧ ଭାବରେ ଶୁଣି ଯାଉଥିଲେ) ଭଗବାନ ! ଭଗବାନ ! ତୁମେ ଅଛ ···ତୁମେ ନିଶ୍ଚୟ ଅଛ ! (ଆଖିରେ କୃତଜ୍ଞତାର ପ୍ରେମାଶ୍ରୁ । ସାଗରର ପ୍ରବେଶ) ଆସ ବାପା, ମୋ ଚାକିରି ଗଲେ କ'ଣ ହେଲା, ବନ୍ଟୁକୁ ମୋର ତୁମେ ଚାକିରିରେ ରଖେଇ ଦେଇଚ—ବନ୍ଟୁ ମୋର ରୋଜଗାର କରିବ—ଆମର ଆଉ ଦୁଃଖ କ'ଣ ?

ବନୁ—ମାଲିକଙ୍କୁ କହି ସାଗର ଭାଇ ତାଙ୍କର ଜାଗାରେ ମତେ ରଖେଇ ଦେଇଚନ୍ତି, ବାପା ! ସେ କୁଆଡ଼େ ଆଜ କେଉଁଠି କ'ଣ କରିବେ···

ପୀତବାସ—ନା, ନା, –ଏଇଟା ତ ଠିକ୍ କାମ ହେଲା ନାହିଁ ସାଗର ! ତୁମେ ଚାକିରି ଛାଡ଼, ସେଠି ବନୁକୁ ରଖେଇ ଦବା···

ସାଗର—ଫାର୍ମ୍‌ର ମାଲିକ ଅଣଓଡ଼ିଆ ହେଲେ ବି ତାଙ୍କର ହୃଦୟ ଅଛି ଦେଖିଲି । ସେ ମୋ କଥାରେ ରାଜି ହୋଇଗଲେ । ସବୁ ଠିକ୍ ହୋଇଯିବ ମଉସା ! ଆପଣଙ୍କ ଚାକିରି ଯିବାକଥା ବାଟରେ ଶଙ୍କର ବାବୁଙ୍କଠୁଁ ଶୁଣିଲି, ହେଲେ ଚିନ୍ତା ନାହିଁ । ଉଃ ! (ମଝିରେ ମଝିରେ ପେଟର ଯନ୍ତ୍ରଣାରେ ବ୍ୟସ୍ତ ହୋଇ ପଡ଼ୁଥିଲେ । )

ପୀତବାସ—ହଉ ବାପା ତୁମ ଇଚ୍ଛା । ବନୁଟିକୁ ତୁମେଇ ମଣିଷ କରେଇଚ – ସେ ମୋର ନୁହେଁ କି ଆଉ କାହାର ନୁହେଁ, ସେ ତୁମର ।

ସାଗର—ବନୁ ମୋ ଭାଇ—ସେ ତ ଆଉ ପର ନୁହେଁ ! ବାପା ବୋଉ ମୋର କେହି ନାହାନ୍ତି—ଆପଣମାନେ ମୋ ବାପା, ବୋଉ ସବୁ —ବାପା ବୋଉଠୁଁ ଅଧିକ ସ୍ନେହ କରୁଚନ୍ତି ।

ଅଳକା—ତୋର ଗୋଟିଏ ଭଣଜା ହୋଇଚି, ଶୁଣିଚୁ ?

ବନୁ—ବାଟରେ ମୁଁ ତାଙ୍କୁ କହିଚି ।

ସାଗର—ଭାରି ସୁନ୍ଦର ପୁଅଟି ହୋଇଥିବ, ନୁହେଁ ମାଉସୀ ? ସୁରୁଚି ଆମର ଦେଖିବାକୁ ଭାରି ସୁନ୍ଦର, ପିଲାଟି ନିଶ୍ଚୟ ଆହୁରି ସୁନ୍ଦର ହୋଇଥିବ । ନୁହେଁରେ ବନୁ ?

ବନୁ—ହଁ, ସାଗର ଭାଇ ! ଅପା ପୁଅଟି ଠିକ୍ ତା'ର ପରି ହୋଇଥିବ ।

ସାଗର—ବନୁ, ଟିକଏ ପାଣି ଆଣିଲୁ । (ବନୁ ପାଣି ଆଣିବାକୁ ଗଲା । )

ଅଳକା—ଆଚ୍ଛା, ସାଗର ! ଭଉଣୀଟିକୁ ସିନା ଦୂର ଗାଁକୁ ପଠେଇ ଦେଲୁ, ମାଉସୀ ଏ ଘରେ ଥିବା ଯାଏଁ କ'ଣ ଗଣ୍ଡାଏ ଶାଗ ଭାତ ତତେ ବାନ୍ଧି ଦେଇ ପାରିବ ନ ଯେ, ତୁ ସେଇ ହୋଟେଲରେ ଅଖିଆ ଅପିଆ ପଡ଼ିଥିବୁ ! ତୋ ଦେହର ଅବସ୍ଥା କ'ଣ ହେଲଣି କହିଲୁ ବାପ !

ସାଗର—ନାଇଁ ମାଉସି, ମୁଁ ତ ଭଲ ଅଛି । (ପେଟର ଯନ୍ତ୍ରଣାକୁ ଲୁଚି ରଖି) ମୁଁ ଭଲ ଅଛି । ଯୋଉ ସ୍ନେହ ଟିକକରେ ଏ ସ୍ନେହ-କଙ୍ଗାଳ ପୁଅକୁ ତୁମର ବାନ୍ଧି ରଖିଚ, ଗଣ୍ଡାଏ ଖାଇବା କ'ଣ ତାଠୁଁ ବଡ଼ କଥା ? ଉଃ ! (ବନୁ ପାଣି ଆଣି ଦେଲା)

ପୀତବାସ—କ'ଣ ହୋଇଚି ସାଗର ! କଥା କହୁଁ କହୁଁ ଇମିତି କ'ଣ ତମକୁ କଷ୍ଟ ହଉଚି ? ଥରକୁ ଥର ପେଟରେ ହାତ ଦେଇ ତୁମେ ଯେମିତି—(ସାଗର ପାଣି ପିଇଲେ)

ସାଗର—ଡାକ୍ତର କହୁଚନ୍ତି ପେଟ ଭିତରେ ଅଲସର୍ ହୋଇଚି । ସେ ଠିକ୍ ହୋଇଯିବ । ଆପଣ ଚିନ୍ତା କରନ୍ତୁ ନ । ଦେହ ଉପରେ କାହାର ଲୋଭ ନାଇଁ ଯେ ! ମୁଁ ଠିକ୍ ଅଛି—ମୁଁ ଠିକ୍ ଅଛି—(କହୁଁ କହୁଁ ଯନ୍ତ୍ରଣାର ସ୍ପଷ୍ଟ ଦାଗ ତାଙ୍କ ମୁହଁରେ ଫୁଟି ଉଠୁଥିଲା । ମାତ୍ର ସେ ହସିବାକୁ ଚେଷ୍ଟା କରୁଥିଲେ । )

ଅଳକା—ପୁଅ କଥା ଶୁଣିଲ ! ଅବସ୍ଥା ଆସି ରହିଲାଣି, ତା' ଆଡ଼କୁ ଆଉ ଅନେଇ ହଉ ନାଇ···ସେଥିରେ କହୁଚି ଭଲ ଅଛି !

ସାଗର—ସମସ୍ତଙ୍କୁ ଆପଣାର କରି ମରିବାର ସୌଭାଗ୍ୟ ମୋର ହଉ ମାଉସି ! ହେଲେ···ମୋ ଲାଗି ଟୋପାଏ ଲୁହ ଯେମିତି କେହି ନ ଗଡ଼ାନ୍ତୁ !

ଅଳକା—ହଉ, ହଉ, ତୁ ଆସିଲୁ ଭିତରକୁ । ମୁଁ ତତେ ଆଉ ସେ ହୋଟଲରେ ରହିବାକୁ ଦେବି ନି । ଖାଇବା ପିଇବା ବେଳ ଅବେଳ କିଛି ଠିକ୍ ନାହିଁ— ମଣିଷ ହେଇ କେତେ ସହିବୁ ଯେ ? ଆ—

ସାଗର—(ଧୀରେ ଧୀରେ ଉଠିଲେ) ନାହିଁ ମାଉସି, ମୁଁ ଯାଉଛି ! ବନ୍ଧୁର ଗୃହକର୍ମ ଠିକ୍ ହେଇଗଲା···ଭଣଜାଟିଏ ହବା କଥା ବି ଶୁଣିଲି···ମନଟା ଖୁସି ହେଇଗଲା । (ହାତରୁ ଘଣ୍ଟା ଖୋଲି) ନିଅ, ମାଉସି ! ଗରିବ ମାମୁଁର ଦବାକୁ ତ ଆଉ କିଛି ନାହିଁ, ଏଇ ଘଣ୍ଟାଟି ତାକୁ ଦବ । ବଡ଼ ହେଲେ ସେ ହାତରେ ବାନ୍ଧିବ । ମନା କରନ୍ତୁ' ମାଉସି ! ବନ୍ଧୁର ପୁଅକୁ ମୋର ତ ପୁଣି କିଛି ଦବାର ଅଛି । ପେଟରେ ଅଲସର୍ ହେଇଛି ଯେତେବେଳେ, ମଣିଷ ଜୀବନ··କେତେବେଳେ କୋଉ କଥା ! (ହସିବାକୁ ଯାଇ ଯନ୍ତ୍ରଣା ଅନୁଭବ କଲେ)ଉଃ—

ପୀତବାସ—ସାଗର ! ତମକୁ ଭାରି କଷ୍ଟ ହଉଛି—ନା ବାପା ?

ସାଗର—ଏ କଷ୍ଟ ଯେ ମୋର କେତେ ଇଷ୍ଟ, ସେ କଥା ଆପଣମାନେ କେହି ବୁଝି ପାରିବେ ନି ମଉସା ! ମୁଁ ଯାଉଛି, ବାହାରେ ରିକ୍ସା ଛିଡ଼ା ହେଇଛି । (ଅଳକା ଆଖିରେ ଲୁହ)

ପୀତବାସ—ସାଗର, ଶୁଣ ବାପା ! ଶୁଣ —

ଅଳକା—ସାଗର, ଶୁଣି ଯା– ( ମାତ୍ର ସାଗର ଚୂଲିଗଲେ କିଛି ନ ଶୁଣି )

ପୀତବାସ—ବୃଦ୍ଧ ବୋକା, ଏଇ କ'ଣ ମଣିଷ ? (ଚିନ୍ତା ହୋଇଥା'ନ୍ତି ସେମିତି)

•••o•••

—ଦ୍ୱିତୀୟ ଦୃଶ୍ୟ—

[ଡକ୍ଟର ଦାସଙ୍କ ଘର ଅଳିନ୍ଦ । ରଙ୍ଗମଞ୍ଚ ଆଲୋକିତ ହେଲା ପରେ ଦେଖାଗଲା—ଡ଼କ୍ଟର ଦାସ ଓ ଅସୀତା କଥାବାର୍ତ୍ତା କରୁଛନ୍ତି । ]

ଡ଼ଃଦାସ—ତୁ ଠିକ୍ କଥା କହିଚୁ ମା, କ୍ଷୁଧା ଖାଲି ଖାଇବାରେ ନାହିଁ । ମଣିଷର କ୍ଷୁଧା ଅସୀମ । ଅତନୁଠି, ସାଗରଠି, ତୋଠି, ମୋଠି ଆଜି ସମସ୍ତଙ୍କଠି ସେଇ କ୍ଷୁଧାର ବିଭିନ୍ନ ପ୍ରକାଶକୁ ମୁଁ ବିଶ୍ଳେଷଣ କରି ଦେଖୁଚି—ବୈଜ୍ଞାନିକର ପ୍ରବୃତ୍ତି ନାହିଁ କି ନା, ସେଥିପାଇଁ ମୁଁ ଖାଲି ଦେଖି ଯାଉଚି, କ'ଣ ଥିଲା, କ'ଣ ହେଲା—ଆଜି କାହିଁକି ହେଲା– କିମିତି ବା ହେଲା ? ଗବେଷଣା ମୋର ଶେଷ ହୋଇ ନ ଥିଲା, ଏବେ ବି ମୁଁ ସୃଷ୍ଟିର ରହସ୍ୟ ଭେଦ କରିବାକୁ ଚେଷ୍ଟା ଚଳେଇଚି ।

ଅପୀତା—ତୁମେ କ'ଣ ଏବେ ବି ଆଶା ରଖିଛ ଅଜା ?

ଡ଼:ଦାସ—ତୁ ଜାଣିନୁ ମା, ବୈଜ୍ଞାନିକମାନେ ଗଭୀର ଆଶାବାଦୀ । ଚୈତନ୍ୟ ଥିବା ଯାଏ ସେମାନେ ସବୁବେଳେ ସଚେତନ, ସଜାଗ ! ମୁଁ ସ୍ପଷ୍ଟ ଦେଖୁଛି ଅପୀତା, ଅତନୁ ବାଟକୁ ଫେରି ଆସିବ !

ଅପୀତା—ଅଜା !

ଡ଼:ଦାସ—ତୋ'ର ବାପା ନାହିଁ କି ମା ନାହିଁ; ଏଇ ଅଜା ତୋର ସବୁ । ବହୁତ ଭାବି ଚିନ୍ତି, ବହୁତ ବିଚାର କରି, ସେ ଦିନେ ଖୁବ୍ ଯୋଗ୍ୟ ଲୋକ ହାତରେ ଦେଇଥିଲି ମା ! ହେଲେ, କ'ଣ ଯେମିତି ହୋଇଗଲା, ଅତନୁ ଯେମିତି ହଠାତ୍ ବଦଳି ଗଲା !

ଅପୀତା—ପୃଥିବୀର ରଙ୍ଗ ପ୍ରତି ମୁହୂର୍ତ୍ତରେ ବଦଳି ଯାଉଛି ଅଜା ! ବିଚିତ୍ର ଏଇ ରଙ୍ଗ, ଅଦ୍ଭୁତ ଏଇ ବଦଳିଯିବା !

ଡ଼:ଦାସ—ସେଇ ପରିବର୍ତ୍ତନ ଭିତରେ ଅତନୁ ମଧ୍ୟ ବଦଳି ଯିବ ଅପୀତା, ତୁ କାନ୍ଦ ନାହିଁ ! ପତନ ତୋ'ର ତ ହୋଇନି, ହୋଇଛି ଅତନୁର । କିଛି ଯୋଉ ଦିନ ଭାଙ୍ଗିବ, ସେ ପୁଣି ତୋ'ର ପାଖକୁ ଚାଲି ଆସିବ ମା ! ତତେ ଛାଡ଼ି ସେ ରହି ପାରିବ ନି । ନା, କେବେ ନୁହେଁ !

ଅପୀତା—କିନ୍ତୁ ଏ ଦୀର୍ଘ ଦିନ···ମୁଁ କ'ଣ ଅପେକ୍ଷା କରି ପାରିବି ଅଜା ! ଧୈର୍ଯ୍ୟ କ'ଣ ମୋର ରହିବ !

ଡ଼:ଦାସ—ଅପୀତା ! ତୁ କାନ୍ଦୁଛୁ ମା ? ଜଣେ ବୈଜ୍ଞାନିକର ରକ୍ତ ତୋ ଦେହରେ ଭରି ରହିଛି, ଧୈର୍ଯ୍ୟ ତୋର ରକ୍ତଗତ । ଅଶ୍ରୁ—ମହାଗତ—ତୁ କାନ୍ଦୁଛୁ ?

ଅସୀତା—ସେଇ ଆଶୀର୍ବାଦ ମତେ କର ଅଜା; ଏଇ ଆଶୀର୍ବାଦ ତୁମେ ମତେ କର । (ଗୋବନ୍ଧ ଆସିଛି)

ଗୋବନ୍ଧ—ହେଲେ ମୁଁ ଆଉ ପାରିବନି ବାବୁ, ମା'ର ଆଖି ଲୁହ ମୁଁ ଆଉ ଦେଖି ପାରିବନି ! ତମେ ମତେ ଛୁଟି ଦେଇ ଦିଅ !

ଡ଼:ଦାସ—ତୋ'ର ଛୁଟି ନାହିଁ ରେ ଗୋବନ୍ଧ, ଛୁଟି ତୋର ନାହିଁ । ବାପା ମା' ଛେଉଣ୍ଡ ପିଲଟାକୁ କେମିତି ବଢ଼ାଇ ମଣିଷ କରିଥିଲି ଦେଖିଚୁ ତ ଗୋବନ୍ଧ ! ଆରମ୍ଭଟା ଯେତେବେଳେ ଦେଖିଚୁ, ଶେଷଟା ନ ଦେଖିବା ଯାଏ ତୋ'ର ଛୁଟି କାହିଁ ?

ଗୋବନ୍ଧ—କେତେ ଆଉ ଦେଖିବି ବାବୁ ! ସେତେବେଳେ କହୁ କହୁ ମୋ କଥା ତ ଶୁଣିଲ ନାହିଁ—ତେର ଟାଣ ବୋଲି ବଡ଼ ଗଛକୁ ଆଶ୍ରା କଲେ ଯେ, ତୋଫାନରେ ଉପୁଡ଼ି ପଡ଼ିଲା । ସାଗର ବାବୁଟି କେମିତି ଅଛି—ଜାଣିଚ ?

ଅସୀତା—ଥାଉ, ଗୋବନ୍ଧ ଦାଦା···

ଗୋବନ୍ଧ—ଏବେ ଧନେ ଦେଖାହେଲା--ଓଃ, ମୋଟେ ଚିହ୍ନି ହଉନି । ଭିତରେ ଭିତରେ କିଏ ଯେମିତି ଗ୍ରାସି ଗଲାଣି ! ଅନେଇ ହଉନି ବାବୁ ! ଆଉ ଅଟନୁ ବାବୁଟି ତ ମଣିଷ ହେଇ ନାହିଁ । ମଦ ପିଇ ପିଇ ଶିଖି ଭୁଟି ଗଲାଣି !

ଡ଼: ଦାସ—ମଦ ନିଶା ଛୁଡ଼ିଯିବ ଗୋବନ୍ଧ ! ଟୋକ୍‌କର ଖାଇଲେ ମଦ ନିଶା ତା'ର ଛୁଡ଼ିଯିବ ! (ପ୍ରସ୍ଥାନ)

ଅସୀତା—ଏଇଥିପାଇଁ ମତେ କ'ଣ ବାଧା କରି ଦେଇଥିଲ ଗୋବନ୍ଧ ଦାଦା ? ଏଇ ସୁଖ ଦେଖିବ ବୋଲି ସେତେବେଳେ ସମସ୍ତେ ଜିଦ୍ ଧରିଥିଲ ?

ଗୋବିନ୍ଦ—ମତେ କିଛି କହନାହିଁ ମା' ମତେ କିଛି କହନାହିଁ । ମୁଁ ବାଇଆ ହୋଇ ଯିବି ! (କାନ୍ଦି କାନ୍ଦି ପ୍ରସ୍ଥାନ)

ଅସୀତା—(ସ୍ୱଗତ) ଅତନୁ, କ'ଣ କଲ ତୁମେ ? ଅସୀତାକୁ ତୁମେ କରିଲ ପତିତା ? ପ—ତି - ତା ! ଉଃ ! (ବିନୁ ଆସିଛି)

ବିନୁ—ଅସୀତା ଅପା !

ଅସୀତା – (ଲୁହ ପୋଛି) କ'ଣ ରେ ବିନୁ ?

ବିନୁ—କିଛି ନାହିଁ । ଆସିଥିଲି, ସେ ଉଧାର ଟଙ୍କା ଦେଇ ଯିବାକୁ । ନିଅ...

ଅସୀତା—ଗୋବିନ୍ଦ ଦାଦାକୁ ଦେଇ ଦେ', ଯା—

ବିନୁ—(ଯାଉ ଯାଉ ଫେରି ଆସି) ଶୁଣିଚ ଅସୀତା ଅପା, ସାଗର ଭାଇଙ୍କ କଥା ଶୁଣିଚ ! ତାଙ୍କ ଗ୍ୟାସ୍‌ଷ୍ଟ୍ରିକ୍ ଅଲସର୍— ପେଟରେ ଘା ହୋଇ...ସେ କି ଯନ୍ତ୍ରଣା - ମୁଁ ନିଜେ ଦେଖିଚି ଅସୀତା ଅପା, ଏତେ କଷ୍ଟ ପୁଣି ସେ ସହୁଚନ୍ତି—

ଅସୀତା—(ଶୁଣିବାକୁ ଆଉ ଧୈର୍ଯ୍ୟ ନାହିଁ ତାଙ୍କର) ସାଗର ଭାଇଙ୍କ ଖବରଟା ମୋ ଆଗରେ କାହିଁକି ? ସାଗର ମୋର କିଏ ? କିଏ ? ସେ ମୋର କେହି ନୁହେଁ—କେହି ନୁହେଁ ! ରୋଗରେ ପଡ଼ି ଛଟପଟ ହୋଇ ମରିଗଲେ ବି ମୋର କ'ଣ କରିବାର ଅଛି ! ଯାଅ, ମତେ ତୁମେମାନେ ବିରକ୍ତ କର ନାହିଁ ।

(ବିନୁର ପ୍ରସ୍ଥାନ)

ଅସୀତା—(ମନକୁ ମନ) ସେଇ ହୋଟେଲ୍ ଭିତରେ...ଚିକିତ୍ସା ଅଭାବରୁ...ଅତି ପାନହୀନ ନିର୍ବାଣପୁ ହେବରେ ସାଗର ଯଦି ମରିଯାଏ, ତାହାହେଲେ ମୁଁ କ'ଣ କରିବି ! ନା, ମୋର ତ କିଛି କରିବାର ନାହିଁ !

ଅଘୋର—(ପ୍ରବେଶ କରିଲେ ବାହାର ପଟୁ) ତମେ ଇ' କେବଳ ପାରିବ, ସାନ ବୋହୂ! ଚେଷ୍ଟା କଲେ ତମେ ଇ' କେବଳ ଆମ ଘରର ସୁଖ ଶାନ୍ତି ଫେରେଇ ଆଣି ପାରିବ ! (ଆଉ ହୋଇ ଛୁଆ ହେଲେ ଅସୀତା) ସାନ ବହୂ, ତୁମେ ଫେରି ଚାଲ । ତୁମେ ନ ଗଲେ ଅଜନ୍ତୁଟା ନଷ୍ଟ ତ ହେଲଣି, ଜୀବନଟା ବି ତା'ର ଛାରଖାର ହୋଇଯିବ ।

ଅସୀତା—ଆପଣମାନେ ତାଙ୍କୁ ଏକୁଟିଆ ଛାଡ଼ି ଦିଅନ୍ତୁ, କ'ଣ ହଉଚି ହୋଇଯାଉ—

ଅଘୋର—ତୁମେ ଏ କଥା କହୁଚ ସାନବହୂ ?

ଅସୀତା—ଯାହା ସାଙ୍ଗରେ ମୋର ସବୁଠୁଁ ବେଶୀ ସମ୍ପର୍କ, ସେ ଯେତେବେଳେ ପତିତା ବୋଲି ଅପବାଦ ଦେଇ ଘରୁ ତଡ଼ି ଦେଲ—କି ଆଶାରେ ମୁଁ ଆଉ ଫେରିଯିବି ? ମୋ କଥା ଶୁଣିବ କିଏ ? —

ଅଘୋର—ଏଇନେ ଆମ ଘର ଆଉ ଘର ହୋଇ ନାହିଁ ସାନ ବୋହୂ ! ବୋଉ ତ ସବୁବେଳେ କାନ୍ଦୁଚି । ତୁମେ ଫେରି ନ ଗଲେ ସେ ବୋଧହୁଏ ବେଶୀଦିନ ବଞ୍ଚିବ ନି !

ଅସୀତା—କମିତି ଫେରି ଯିବି ? କୋଉ ଅଧିକାରରେ ବା ଯିବି ? ମତେ ହରେଇ ବୋଉଙ୍କର ଯେ କେତେ ଅସୁବିଧା ହଉଥିବ, ସେ କଥା ମୁଁ ବୁଝି ପାରୁଚି । ଆପଣ ବୋଉଙ୍କୁ ଏଇଠି ଆଣି ଛାଡ଼ି ଦେଇଯାନ୍ତୁ । ଜୀବନର ବାକି କେତେଟା ଦିନ ତାଙ୍କର ମୋରି ପାଖରେ କଟିଯିବା ସାଙ୍ଗେ ସାଙ୍ଗେ ମୁଁ ବି ତାଙ୍କ ସେବାରୁ ବଞ୍ଚିତା ହେବି ନି !

ଅଘୋର—ସାନ ବୋହୂ !

ଡ଼: ଦାସ—(ଫେରି ଆସିଲେ) କିଏ—ଅଘୋର ବାବୁ ?

ଅଘୋର—ନମସ୍କାର, ଆଜ୍ଞା ।

ଡ଼: ଦାସ—କୁଆଡ଼େ ଆସିଚ ବାବୁ ! ଅର୍ପିତାକୁ ଫେରେଇ ନବାକୁ ? ନା, ଅର୍ପିତା ଯିବନି । ମୁଁ ତାକୁ ମୋ ପାଖରୁ ଛାଡ଼ିବି ନି ! ଧରି ନିଅ, ତା'ର ବାହାଘର ହୋଇନି ।

ଅଘୋର – ସବୁଆଡ଼ୁ ବିବେଚନା କରି କହନ୍ତୁ, ସାନ ବୋହୂ ଯଦି ନ ଯାଆନ୍ତି···

ଡ଼: ଦାସ—(ବାଧାଦେଇ) ବିବେଚନା— ! ମୁଁ ନିଜେ ଯୋଉ ଦିନ ଅର୍ପିତାକୁ ନେଇ ତୁମ ଘରକୁ ଗୋଟାଏ ମିଳାମିଶା କରିବାକୁ ଯାଇଥିଲି, ସେଦିନ କଥା ଏତେ ଜଲ୍‌ଦି ଭୁଲିଗଲ ? ମଦ କ'ଣ ମଣିଷକୁ ଇମିତି ମାତାଲ···ଇମିତି ଅନ୍ଧ କରିଦିଏ ଅଘୋର ବାବୁ ! ନା, ସେ ଦିନର ସେଇ ଲାଞ୍ଛନା, ସେ ଦିନର ସେଇ ନିର୍ଯ୍ୟାତନା ପରେ ଅର୍ପିତାର ଫେରିବା ପ୍ରଶ୍ନ ଆଉ ଉଠି ପାରେନା !

ଅଘୋର—ତଥାପି···ବିବେଚନା କରନ୍ତୁ ଆଜ୍ଞା ! ଅଚନୁ ଭୁଲ୍ ବାଟରେ ଚାଲି ଯାଉଚି, ହେଲେ ଆପଣ ଟିକିଏ ଚେଷ୍ଟା କଲେ···

ଡ଼: ଦାସ—ଆଉ କଣ ହବ ! Dr Das ର ନାତୁଣୀକୁ ପତିତା ବୋଲି ଯେ କହି ପାରିଲା, ସେ କେବଳ ତା'ର ସ୍ୱାମୀ ବୋଲି, ନହେଲେ ତା'ର ଏତେ ବଡ଼ ଅହଙ୍କାରର ଶାସ୍ତି ମୁଁ ସେଇ ଦିନ, ସେଇଠି ଦେଇଥାନ୍ତି । କିନ୍ତୁ ସେ ଗୋଟାଏ ଭୁଲ୍—

ଭ୍ରମ, ଭ୍ରମ ! ଭ୍ରମର ଏକ ଗୋଲକଧନ୍ଦା ଭିତରେ ସବୁ ଯେମିତି ଖାଲି ଭୁଲ୍ ହୋଇଗଲା । ତୁମେ ଯାଅ, ଯାଅ ତୁମେ— (ଚିତ୍କାର କରି ଉଠିଲେ)

ଅସୀତା – ଅଜା ! (ଆହତ କଣ୍ଠରେ)

ଡ଼: ଦାସ—(ନୀରବରେ ଅଘୋର ଫେରି ଯାଉଥିଲେ) ସାଗର ପରି ବନ୍ଧୁକୁ ଯିଏ ଅବିଶ୍ୱାସ କଲା, ଅସୀତା ପରି ସ୍ତ୍ରୀକୁ ଯେ ସନ୍ଦେହ କଲା, ମଦ ପିଇ ସଂସାରକୁ ଯେ ଉଚ୍ଛନ୍ନ କରିଦେଲା··· ସେମିତି ଗୋଟାଏ ନିର୍ବୋଧ ପଶୁ ସାଙ୍ଗରେ Dr. Dasର ସଂପର୍କ ରହି ପାରେ ନା ! ତୁ କାନ୍ଦ ନାହିଁ ମା, ଅନୁତାପରେ ଜର୍ଜରିତ ନ ହେବା ଯାଏ ଲକ୍ଷ୍ମୀଛଡ଼ା ହୋଇ ତାକୁ ଚରମ-ଶାସ୍ତି ଭୋଗ କରିବାକୁ ହବ । ଏତେ ସହଜରେ ମୁଁ ତତେ ମୁଣ୍ଡ ନୋଇଁବାକୁ ଦେବି ନି ! ମନେ ରଖ, ତୁ Dr. Dasର ନାତୁଣୀ ! (ଚାଲିଗଲେ ଧିରେ)

—ପରଦା—

···o···

## —ତୃତୀୟ ଦୃଶ୍ୟ—

[ ଅଘୋର ବାବୁଙ୍କ ଘର । ପରଦା ଉଠିଲା ପରେ ଦେଖାଗଲା ଶ୍ୟାମାଙ୍ଗୀଙ୍କ ଗୀତର ତାଳେ ତାଳେ ନାଚୁଛନ୍ତି ସୁଭଦ୍ରାଙ୍ଗୀ । ବାହାରୁ ଆସିଲେ ଅଘୋର, ମୁହଁରେ ଗମ୍ଭୀର ହତାଶାର ଚିହ୍ନ । ଏ ନୃତ୍ୟ ଗୀତର ଆୟୋଜନ ଦେଖି ମନଟା ତାଙ୍କର ତିକ୍ତ ହୋଇ ଉଠିଲା ।

### —-ଶ୍ୟାମାଙ୍ଗୀଙ୍କର ଗୀତ—

ସୁନାଲତାର ଫୁଟନ୍ତା ଫୁଲ, ଝୁଲେହିଁ ରେ···
ଦୂରେ ଦୂରେ ··
ମରମେ ମରମେ ଗୁମର ଉଠେ
ସୁମର କାହା ପାଇଁ ଝୁରେ;
ବାଉଳା ମନେ କି ଗୀତ ଗାଏ, ଅଜଣା କେଉଁ ମଧୁର ସୁରେ ।
ଛନ ଛନ ଛନ କଅଁଳ ତନୁ ଢଳ ଢଳ ଢଳ ଯଉବନ ଖେଳେ
ଭୁ-ଲୋକ ଝୁଣ୍ଟି, ପୁଲକ ଜାଗେ, ଉଲୁସି ଉଠେ···
ଧୀରେ, ଧୀରେ ।୧।
ମଧୁର ମଳୟ ସୁଆଦ ଲୁଟି, ଆଲୁଳେ ନାଚେ ତାଳେ ତାଳେ—
ଘନ ଘନ ଘନ ନୟନୁ ବନ ଝରେ
ଥନ ଥନ ପ୍ରୀତି ସ୍ରୋତେ···
ଉତାଳ ଗୁତି, ପୁଲକେ ଅତି ଉଠେ ରେ ମାତି
ପ୍ରିୟ ଭାବନାରେ ।୨।

ଅଘୋର—ଶ୍ୟାମାଙ୍ଗି ! ଅନୁଗ୍ରହ କରି ଏ ନାଚକୁଦ ବନ୍ଦ କର । ଦେଶ-କାଳ-ପାତ୍ରକୁ ଦୃଷ୍ଟି ଏ ପ୍ରୋଗ୍ରାମ୍ ବଡ଼ କଦର୍ଯ୍ୟ ଲାଗୁଛି ।

ଶ୍ୟାମାଙ୍ଗୀ—ବେ-ରସିକ ଲୋକ, ତୁମକୁ ତ ସବୁ ଖରାପ ଲାଗିବ । ତୁମେ କ'ଣ ଆଉ ବୁଝିବ, ବିଶାଳ-କଳିଙ୍ଗ-ଆର୍ଟ-ପ୍ରୋଡାକ୍‌ସନ୍‌ସ୍ ତରଫରୁ ଯୋଉ ଭେରାଇଟି ସୋ'ର ବନ୍ଦୋବସ୍ତ କରା ଯାଇଛି, ସେଥିରେ ଆମ ସୁମିର ତ ଜବରଦସ୍ତ ପ୍ରୋଗ୍ରାମ୍ ଅଛି ?

ଅଘୋର—କିନ୍ତୁ ଏ କଷ୍ଟି ବିଦ୍ୟା-ସୁନ୍ଦର ଭଉଣୀଟିକୁ ତୁମର ୟୁରୋପୀୟାନ୍ dressରେ ସଜେଇ ଯେତେଠି ଯେତେ ଜବରଦସ୍ତ ଭାବରେ ନଚେଇଲେ ବି ବିଶାଳ-କଳିଙ୍ଗ ଭୂଇଁରେ ତାର ପାଇଁ ବରପାତ୍ରର ସୁବିଧା ମୋଟେ ହବ ନାହିଁ; ସେ ତ ଏକାବେଳକେ ସିଦ୍ଧାନ୍ତ । ଏ ପ୍ରକାର ନିର୍ଲଜ-ବ୍ୟବସାୟ ବନ୍ଦ କରି ବିବାହର ଅନ୍ୟ ରାସ୍ତା ଦେଖ ।

ଶ୍ୟାମାଙ୍ଗୀ—ତୁମର ଉପଦେଶ ମୋଟେ ଦରକାର ନାହିଁ, ଦୟାକରି ଭିତରକୁ ଯାଅ ।

ଅଘୋର—ମୁଁ ଯାଉଛି—ହେଲେ କହି ଯାଉଛି; ଏ ନାଚ ଗାଉଣା ଯେତିକ ହୋଇଛି ସେତିକରେ ବନ୍ଦ କର ! ଘରର ଅବସ୍ଥା କ'ଣ ହେଲାଣି—ବୋଉ କିଛି କହୁନାହିଁ ବୋଲି ସିନା ତୁମେ ଏ ତାକ୍‌ଥିନାଥିନ ତାକ୍‌ଥିନାଥିନ ଚଳେଇଛ, ନ ହେଲେ ଆଉ କୋଉ ଶାଶୁ ହୋଇଥିଲେ ତୁମ ଚେହେରା ଖରାପ କରି ଦିଅନ୍ତାଣି ! ପ୍ରୋଗ୍ରାମ୍ କରୁଛ ! ରୋମ୍ ନଗରୀ ହୁ' ହୁ' ହୋଇ ଜଳି ଯାଉଛି—ମହା-ମହିମ ସମ୍ରାଟ୍ ନିରୋ ବସି ତମ୍ବୁରା ବଜାଉଛନ୍ତି ! ତମ୍ବୁରା ! ନିର୍ଲଜ !

ଶ୍ୟାମାଙ୍ଗୀ—ଓହୋ ! ମଣିଷ ତ ଦେଖିଲ ଗୋଟାଏ – (ବାଗରେ)

ଅଘୋର – ସେଦିନ ମୁଁ ବାରମ୍ବାର କହୁଚି, ସାଗର ସାଙ୍ଗରେ ତମ ଭଉଣୀଙ୍କ ବାହାଘର ପ୍ରସ୍ତାବ ଉଠାଅ ନାହିଁ କି ଅତନୁ ମନରେ ଆଘାତ ଦିଅ ନାହିଁ···ଶୁଣିଲ ମୋ' କଥା ? ନା, ଝିଅଟାଏ ଉଠେଇ ଦେଇ ନିଶ୍ଚିନ୍ତରେ ଏଇନେ ସଙ୍ଗୀତ ଗାଉଚ ! କ,ଣ ଭୈରବୀ ନା ମେଘ-ମହ୍ଲାର ? ଛି ! ଛି !
(ବାଗରେ ଭିତରକୁ ଚାଲିଗଲେ)

ସୁଭଦ୍ରା – ଶୁଣିଲ୍···ଶୁଣିଲୁଟି ଅପା ! ମୁଁ ଆଉ···ନାଚିବି ନି !
(ଅଭିମାନ କରି)

ଶ୍ୟାମଙ୍ଗୀ—ଶୁଣିବି କ'ଣ ! ତୁ ନାଚିବୁଟି ଆମର । (ପୁଣି ନୃତ୍ୟ ଓ ଗୀତ ଆରମ୍ଭ ହେଲା) ।

ଅତନୁ – (କଣ କହୁ କହୁ ଭିତରକୁ ଆସିଲେ· ମାତ୍ର ଏସବୁ ଦେଖି ତାଙ୍କ ମୁହଁରେ ହର୍ଷ ଫୁଟି ଉଠିଲା) ହ୍ୟାଲୋ, ନୂଆଁବୋଉ ! ତୁମେ ତ ଭାରି ସୁନ୍ଦର ଗାଉଚ ! ଆଉ ସୁଭା ତ ବେଶ୍ ଠିକ୍ ଅଛି ! ଆସ, ସମସ୍ତେ ସାଙ୍ଗ ହୋଇ ନାଚିବା, ଗାଇବା – ଟ୍ରାଲ···ଟ୍ରାଲ ଲା – ! (ସୁଭଦ୍ରାକୁ ଧରି ଧକାଇବା ସମୟେ 'ବୋଉ ଲୋ' କହି ସେ ଛାଟିପିଟି ହୋଇ ଉପରେ ପଳାଇଗଲା । ଶ୍ୟାମାଙ୍ଗୀ ମଧ୍ୟ ଉପରେ ଖସିଗଲେ)

ଅତନୁ—ଏଁ ଚାଲିଗଲ ! ମୋ କଥା କେହି ରଖିଲ ନି ! ହଉ, ଯାଅ । ବିଶ୍ୱାସଘାତକତା କରି ସାଗର ଚାଲିଗଲା, ଅସାତା ବି ତା' ବାଟରେ ଗଲା – ତୁମେ ଯାଅ । ସମସ୍ତେ ଅତନୁକୁ ଛାଡ଼ି ଚାଲିଯାଅ, ହେଲେ ସେ ଏକା ନାଚିବ – ଟ୍ରାଲା, ଲା,

ଟ୍ରଲ, ଲ—(ନାଚବାର ଅଭିନୟ କରୁଥିଲେ । ଏତିକିବେଳେ ଯମୁନା ଦେଇ ଆସୁଥିଲେ, ଅତନୁଙ୍କୁ ଦେଖି ତାଙ୍କର ଅନ୍ତରାତ୍ମା ଜଳି ଉଠିଲା । )

ଯମୁନା—ଅତି !

ଅତନୁ—ଅତି ମରିଗଲା ବୋଉ, ମଦ ପିଇ ପିଇ ଅତି ମରିଗଲା ! ହିଁ ଲୋ ବୋଉ, ଅତି ମଦ ପିଇଚି···ମଦ ! (ଟଳି ଟଳି ଆଗେଇ ଆସିଲେ) ସମସ୍ତେ ଖରାପ, ଏଇ ମଦ ଖାଲି ଭଲ— ହିଁ, ଖାଲି ଭଲ !

ଯମୁନା—ଅତି ! (ରାଗରେ ଅତନୁଙ୍କୁ ପ୍ରହାର କଲେ । ବାରମ୍ବାର ପ୍ରହାର କରିବାରୁ ଅତନୁ ନିଜକୁ ବଞ୍ଚାଇବାକୁ ଚେଷ୍ଟା କଲେ, ଶେଷରେ ଉତ୍ତେଜିତ ହୋଇ ଉଠିଲେ । ) ସାନ ପୁଅ ବୋଲି ଗେଲବସରରେ ବଢ଼େଇଥିଲି ··ଏଇଥିପା ଦେଖିବାକୁ ? ତୋ ବାପା ଯଦି ଆଜି ବଞ୍ଚିଥାନ୍ତା, ମୁଣ୍ଡ ଟେକି ସେ ବାଟ ଚାଲି ପାରନ୍ତା ! ବଡ଼ ହାକିମ ହୋଇଚୁ···ମଦୁଆ, ମାତାଲ ! ମରି ଗଲୁ ନାହିଁ, ମଦ ପିଇ ମୋ ପାଖକୁ ଆସିଲୁ ?

(ପୁଣି ମାରିବା)

ଅତନୁ—(ରାଗରେ) ବୋଉ ! (ତଣ୍ଟି ଚିପି ଦେଉଥିଲେ, ଦଉଡ଼ି ଆସିଲେ ଅଘୋର ବାବୁ । ଧରି ଛଡ଼ାଇ ଦେଲେ । )

ଅଘୋର—ଅତି, ସେ' କ'ଣ ହଉଚି ?—

ଯମୁନା—ତାକୁ ଛାଡ଼ ଦେ ଅଘି ! ଗୁଣ୍ଡରୁ ରକ୍ତ ନିଗାଡ଼ି, କଳିଜା ଶୁଖେଇ ତାକୁ ମଣିଷ କରିଥିଲି, ସିଏ ମତେ ନ ମାରିଲେ, ମାରିବ କିଏ ? ମାରି ଦେ—ମାରି ଦେ—ଆ—

(ପାଗଳୀ ପରି)

ଅଘୋର—ବୋଉ !

ଯମୁନା—ଗୁଡ଼ ଦେ' ତାକୁ—

ଅଘୋର—ଅନ୍ତ, ତୁ ବୋଉ ଉପରେ ହାତ ଉଠେଇଲୁ !

ଅଚନ୍ତୁ—ଭଲ କଲ…ବେଶ୍ କଲ…ତୁମେ କଏ ? ଭିତରେ ଭିତରେ ନିଆଁ ଲଗେଇ ଦେଇ ଭଲଲୋକ ଦେଖେଇବାକୁ ଆସିଚ…ନା ? ମୁଁ ତମ ସମସ୍ତଙ୍କି ଚିହ୍ନିଚି—ସମସ୍ତଙ୍କୁ ଚିହ୍ନିଚି । (କନ୍ଦି କନ୍ଦି ଚାଲିଗଲେ ଭିତରକୁ)

ଯମୁନା—ସେ' କ'ଣ ହେଲା ରେ ଅଘି ? ଅନ୍ତ ଫେର୍ ମଦ ପିଇ ମୋ ତଣ୍ଟି ଚିପିବାକୁ ଦୌଡ଼ ଆସିଲା ! କାହା ପାଇଁ ଆଜ ଏ ସର୍ବନାଶ ହେଲା !

ଅଘୋର—ବୋଉ ! (ନୀରବ ରହିଲେ)

ଯମୁନା—ତୁ ! ତୋ'ରି ସକାଶେ ମୋର ସର୍ବନାଶ ହେଲା । ବାପ ମରିଗଲା, ତମ ଦିହିଁଙ୍କି ମଣିଷ କରିଥିଲି, ଏଇଆ କଲ ତୁମେ !

ଅଘୋର—ତେବେ ମୁଁ କ'ଣ କହିବି ବୋଉ ! କହିବାକୁ ମୋର ଆଉ ମୁହଁ ନାଇଁ !

ଯମୁନା—ତୁ ନ କହିଲେ କ'ଣ ହେଲା ? ମୁଁ ଜାଣେ, ମୋ ଅନ୍ତ ମୁଣ୍ଡକୁ କଏ ବଗାଡ଼ ଦେଇଚି, ସେ କଥା ମୁଁ ଜାଣେ । ଟିଉସନ୍ କରିବାକୁ ଯାଇ ମନ ଇଚ୍ଛା ଭଲ ପାଠୋଇ ବୋହୂ ବାଛି ଆଣିଥିଲୁ ଅଘି ! (ଶ୍ୟାମାଙ୍ଗୀଙ୍କର ପ୍ରବେଶ) ସେଇ ସକାଶେ ଆଜ ଏ ଘର ଜଳିଗଲା !

ଶ୍ୟାମାଙ୍ଗୀ—ଆଜି କ'ଣ ! ସବୁ ଆମରି ସକାଶେ ନୁହେଁ ଆଜି କ'ଣ ! ସାନବୋହୂ ସାଆନ୍ତାଣି ଯେତେବେଳେ ପର ପୁଅ ସାଙ୍ଗରେ ଏଠିକି ସେଠିକି ମନ ଇଚ୍ଛା ବୁଲି ଯାଉଥିଲେ, ସେତେବେଳେ ତ କାହାରି ପାଟି ଫିଟୁ ନ ଥିଲା ! ଆଜି ଆଜି···

ଯମୁନା—ବୋହୂ ! ସାନ ବୋହୂ କଥାଟା ତୋ ଆଖିକି ବାଜିଲା, ଆଉ ତୁ ଯେତେବେଳେ ତୋ ଭଉଣୀକି ନେଇ ଏଠି ସେଠି ଗୀତ ନାଚ କରିବାକୁ ଯାଉ, ସେତେବେଳେ ତ କାହାରି ପାଟି ଫିଟେ ନା !

ଶ୍ୟାମାଙ୍ଗୀ—ଓ, ସେଇପ୍ରା ବୁଝ ! ସବୁ ତା'ହେଲେ ଆମରି ଦୋଷ ?

ଯମୁନା—ସବୁ ତୋରି ଦୋଷ ! ଅତି ମୁଣ୍ଡକୁ ବିଗାଡ଼ ଦେଇଚୁ ତୁ'ଇ ! ତୋ ଭଉଣୀକି ସାଗର ସାଙ୍ଗରେ ବାହା କରିବୁ ବୋଲି ଖୁବ୍ ଚେଷ୍ଟା କରିଥିଲୁ, ନା ? ରାଜି ନ ହେଲାରୁ ସେ ହେଇଗଲା ପର ପୁଅ—ପର !

ଶ୍ୟାମାଙ୍ଗୀ—ସାଗର ତୁମକୁ ବଡ, ମତେ ନୁହେଁ ! ମୋ ଭଉଣୀ ପାଇଁ ଢେର୍ ବର ମିଳିବେ !

ଯମୁନା—କଥା ଆଉ କାଲିକି କହୁଚୁ ବୋହୂ ! ଗୁଲି ଆ—ହା'ଟା ମାର୍—ଜନମ କଲା ପୁଅ ଯେତେବେଳେ ତଣ୍ଟି ଚିପି ଦବାକୁ ବସିଚ; ତୁ ତ ସହଜେ ପର ଝିଅ !

ଶ୍ୟାମାଙ୍ଗୀ—ହିଁ, ପର ଝିଅ ବୋଲି ତ ତମର କହିବାକୁ ସାହାସ ହଉଚି, ନହେଲେ···

ଅଘୋର—ଚୁପ କର ଶ୍ୟାମା ! ମୁଁ ପଚାରୁଚି ବୋଉ ଆଗରେ ଛୁଡ଼ା ହେଇ କଥା କହିବାର ସାହସ ତୁମର ହେଲା କେବେଠୁ ?

ଆମେ ଏବେ ମୁଣ୍ଡ ଟେକି କଥା କହିବୁ, ଆଉ ତୁମେ ! ତୁମେ ମୋର ଆଗରେ ଛିଡ଼ା ହୋଇ ମୋ ବୋଉକୁ ଅପମାନ ଦେଉଚ ? ତୁମର ଏତେ ଅହଙ୍କାର ! ଜାଣିଚ, ଏହାର ଶେଷ ଫଳ କ'ଣ ହବ ?

ଶ୍ୟାମାଙ୍ଗୀ—କିଛି ଜାଣିବା ଦରକାର ନାହିଁ ! ମତେ ନେଇ ମୋ ବାପ ଘରେ ଛାଡ଼ି ଦେଇ ଆସ । ଦରକାର ନାହିଁ ମୋର ! (ସ୍ୱରରେ ଚାଲି ଯାଉଥିଲେ)

ଅଘୋର—ଶୁଣ ! ମୁଣ୍ଡ ଥଣ୍ଡା କରି ବେଡ଼ିଂ ପତ୍ର ବାନ୍ଧ । ଆଜି ରାତାରାତି ଯିବାର କଥା । ବୋଉ, ମୁଁ ସତ କହୁଚି ବୋଉ ! ଏମାନଙ୍କୁ ନେଇ ମୁଁ ଆଜି ଏଇନେ ଚାଲିଯିବି ! ଆମେ ଚାଲିଗଲେ, ଏ ଘରର ସୁଖ ଶାନ୍ତି ନିଶ୍ଚେ ଫେରି ଆସିବ ! ହଁ, ବୋଉ, ମୁଁ ଯାଉଚି ଗାଡ଼ି ଡ଼ାକିବାକୁ —

ଯମୁନା—ଅଘି, ନାହିଁ, ନାହିଁ ! ତୁ ଫେର୍ କୁଆଡ଼େ ଯିବୁ ! (ଆଖିରେ ଲୁହ, କୋହମିଶା ସ୍ୱରରେ) ଆରେ, ଯିଏ ଯୁଆଡ଼େ ଚାଲିଯିବ ବୋଲି ମୁଁ କ'ଣ ପୁଅ ବୋହୂ କରିଥିଲି ?

ଅଘୋର—ତୁ ଜାଣିନୁ ବୋଉ, ଏମାନେ ଏଠୁ ନ ଯିବା ଯାଏ ସାନ ବୋହୂ ଫେରିବେ ନି, କି ଅନ୍ତ ବାଟକୁ ଆସିବ ନି ! ନା, ମତେ ଏଠୁ ଯିବାକୁ ହବ । (ପ୍ରସ୍ଥାନ)

ଯମୁନା—ଅଘି ! (ଅନନ୍ତ କିଛିଏ ଆଗରୁ ଆସି ସବୁ ଶୁଣୁଥିଲେ । ଯମୁନା ଦେଖି ଫେରିଲା ବେଳେ ହଠାତ୍ ତାଙ୍କ ପାଦ ଧରି ପକେଇଲେ ।)

ଅନନ୍ତ—ବୋଉ !

ଯମୁନା—ଅନ୍ତ !

ଅନ୍ତନୁ—ବୋଉ ! ତୋ' ପାଦ ଛୁଇଁ ମୁଁ ଆଜି ଶପଥ କରୁଚି, ଆଉ କେବେ ମଦ ଛୁଇଁବି ନାହିଁ !

ଯମୁନା—ଅନ୍ତ ! (ମୁହଁରେ ହର୍ଷ)

ଅନ୍ତନୁ—ମନ ଖୁସିରେ କୁଆଡେ ବାହାରି ଥିବି, ସେତିକିବେଳେ ନୂଆବୋଉ ଆସି ସାଗର ଆଉ ଅସୀମା କଥା କହିବେ । ଅଫିସ୍‌ରୁ କାମ କରି କରି ଘରେ ଫେରୁଥିବି—ଠିକ୍ ସେତିକିବେଳେ ନୂଆବୋଉ ମୋ ଆଗରେ ଫେରାଦ୍ ହେବେ । ଶୁଣି ଶୁଣି ମୋ ମୁଣ୍ଡ ଖରାପ ହୋଇ ଯାଇଥିଲା ବୋଉ, ହେଲେ ଆଜି ମୁଁ ଜାଣିଲି ଏ ସବୁ ମୂଳରେ କିଏ !

ଯମୁନା—ମୁଁ କିଛି ଶୁଣିବା ନାହିଁରେ ଅନ୍ତ ! ମତେ ଖାଲି କଥା ଦେ, ମୋ ସାନବୋହୂକୁ ତୁ ଫେରେଇ ଆଣିବୁ, ଆଉ ସାଗରକୁ ତୁ ମୋ ପାଖକୁ ଡାକି ଆଣିବୁ ! ଆଣିବୁ ଅନ୍ତ ?...

ଅନ୍ତନୁ—ହଁ, ବୋଉ ! ମୁଁ କଥା ଦଉଚି, ସେମାନଙ୍କୁ ନିଶ୍ଚୟ ଫେରାଇ ଆଣିବି !

ଯମୁନା—ଅନ୍ତ ! (ଅନ୍ତନୁକୁ କୁଣ୍ଢାଇ ପକାଇଲେ) ମୋ ଅନ୍ତରେ, ତତେ ମୁଁ କେତେ ମାଇଲି ! ( ଆଖିରୁ ତାଙ୍କର ବହି ଯାଉଥାଏ ଲୁହ ।)

—ପରଦା—



## —ଚତୁର୍ଥ ଦୃଶ୍ୟ—

[ପୀତବାସବାବୁଙ୍କ ଘର ଅଗଣା । ବାହାରୁ ଆସିଛନ୍ତି ସାଗର, ହାତରେ ଖଣ୍ଡେ ବ୍ୟାଗ୍ ! ଅବସ୍ଥା ଅତି ଶୋଚନୀୟ । ରୋଗରେ ମେରୁଦଣ୍ଡ ଭାଙ୍ଗି ଗଲାଣି ।]

ସାଗର—ବନୁ, ବନୁ, ଆରେ ବନୁ !

ବନୁ—(ଆସିଛି) ସାଗର ଭାଇ ! ତୁମେ ଭିତରକୁ ଆସୁନ !

ସାଗର—ନାଇଁ ରେ ବନୁ, ମୁଁ ଯାଉଚି ! ସବୁ ଦିନ ପାଇଁ ଏଠୁ ଚାଲି ଯାଉଚି !

ବନୁ—ଏଁ, ତମେ ଫେର୍ କୁଆଡେ ଯିବ ? –

ସାଗର – କୁଆଡେ ଯିବ ସେ କଥା ହୁଏତ ନିଜେ ଇ' ଜାଣିନି ! ଆଉ ତୋ' ସାଗର ଭାଇ ସାଙ୍ଗରେ ଦେଖା ହବ ନି ରେ ବନୁ ! ଘରକୁ ଆସିଲେ କହିବୁ, ତା' ପୁଅଟିକ ଠିକ୍ ତା ନୋଠା ମାମୁଁ ପରି ଗଢ଼ିବ, ଏ ଅଭାଗା ବଡ଼ ମାମୁଁ ପରି ନୁହେଁ ।

ବନୁ—ସାଗର ଭାଇ, ଆମ ସମସ୍ତଙ୍କୁ ଛାଡ଼ି ସତକୁ ସତ ତୁମେ ଚାଲିଯିବ ? (କାନ୍ଦି ପକେଇଲା)

ସାଗର—ବନୁ, ତୁ କାନ୍ଦୁଚୁ ! ମୁଁ ଚାଲି ଯିବି, ତୁ ରହିବୁ, ଖୁବ୍ ବଡ଼ ହବୁ…ମଣିଷ ପରି ମଣିଷ ହବୁ ! ସେତିକି ତ ଦରକାର ! ବନୁ, ତୁ ମୋର କେତେ କାମ ନ କରିଚୁ ? ଗଲାବେଳକୁ ଅଜ ଆଉ ଗୋଟିଏ କାମ କରି ଦବୁ ନି ? ଏ ଚିଠି

ହ'ଖଣ୍ଡ ନେ—ଏ ଖଣ୍ଡକ ଅତନୁକୁ ଦବୁ, ଆଉ ଏ ଖଣ୍ଡିକ ଅସୀତାର (ଶିଠି ଦବା)

ବନୁ—(ଯାଉଁ ଯାଉଁ) ସାଗର ଭାଇ ! ବକଳ ଘରେ ଫେରି ଯିବି(ବା)

ସାଗର—ହଁ ରେ, ଯା—ଯା—(ବନୁର ପ୍ରସ୍ଥାନ)

ପୀତବାସ—(ଆସିଲେ) ସାଗର, କୁଆଡ଼େ ବାହାରିଚ ନା କ'ଣ ?

ସାଗର—ହଁ ମଉସା, ବେଳ ହୋଇ ଗଲାଣି, ମତେ ଯିବାକୁ ହବ !

ପୀତବାସ—ତୁମ ଦେହ ଖରାପ, ତୁମେ ପୁଣି କୁଆଡ଼େ ଯିବ ?

ସାଗର—ଏଇ ସନ୍ଧ୍ୟା ପାସେଞ୍ଜର ଗାଡ଼ିରେ ଚାଲି ଯାଉଚି ମଉସା ! କୁଆଡେ ଯାଉଚି କିଛି ଠିକଣା ନାହିଁ ·! ଯାଉ ଯାଉ ଗାଡ଼ି ଯେଉଁଠି ବାଟ ନବ ! ନ ଗଲେ ତ ହବ ନାହିଁ ମଉସା, ଏଠି ରହି ମୁଁ ଖାଲି ସମସ୍ତଙ୍କି ଦୁଃଖ ଦେଇଚି !

ପୀତବାସ—ତୁମକୁ ପୁଣି ଏ କଥା କିଏ କହୁଚି ! କାହାରିକି ଦୁଃଖ ଦେଲାଭଳି ହୃଦୟ ତ ତୁମର ନୁହେଁ ବାବା !

ସାଗର—ନୁହେଁ ମଉସା ? ଅତନୁ ପାଖରୁ ଅସୀତାକୁ ଛଡ଼େଇ, ଗୋଟିଏ ସୋହାଗର ସଂସାରକୁ ଛାରଖାର କରି ଦେଇଚି, ପୁଅ ହୋଇ ବାପର ଛାତିରେ ଛୁରି ଭୁସି ଦେଇଚି; ଆଉ କ'ଣ କରିଥାନ୍ତି ? (ରଘୁ ବୋଉ ଆସିଲେ)

ପୀତବାସ—ଶୁଣୁଚ,ଶୁଣୁଚ ରଘୁ ବୋଉ ! ତମ ପାଗଳା ପୁଅ କହୁଚି, ତା'ରି ସକାଶେ କୁଆଡେ ସଂସାର ଛାରଖାର ହୋଇ ଯାଉଚି, ଶୁଣୁଚ ! ହୋଟେଲ୍‌ରେ ବି ପଡ଼ି ପଡ଼ି କାଲିକି ଗଲା···

ସାଗର—ସେ ହୋଟେଲରେ ମୋ ପାଇଁ ଆଉ ଥାନ ନାହିଁ, ମଉସା ! ହ' ଦିନ ତଳେ ବାଜ୍ୟରେ ଟିକିଏ ରକ୍ତ ପଡ଼ିଲା,

ହୋଟେଲ ମାଲିକ କହିଲେ ଟି. ବି.—ବୋର୍ଡ଼ର୍ ମାନେ ଛାଡ଼ି ପଳେଇଲେ । ତାଙ୍କ ବ୍ୟବସାୟ ନଷ୍ଟ ହେଲା—ହୋଟେଲ୍ ମାଲିକ ମୋ ବିଛଣା ପତ୍ର ବାହାରେ ପକାଇ ଦେଲେ । କହିଲେ "ଯକ୍ଷ୍ମା ରୋଗର ମରିବାର କଥା, କୋଉ ଡ଼ାକ୍ତରଖାନାରେ କି ଫୁଟ୍‌ପାଥ୍‌ରେ ପଡ଼ି ମର !"

ପୀତବାସ—ସାଗର !

ସାଗର—ଆପଣ କହିଲେ ମଉସା, କୁଆଡ଼େ ଯୋଉ ଝଡ଼ ମୁଁ ଉଠେଇଛି, ମୁଁ ନ ଗଲେ ଏ ସବୁ ଶାନ୍ତ ହବ କେମିତି ?

ଅଳକା—ମୁଁ ତ କେତେ ଥର କହିଛି, ତୁ କ'ଣ ସେ ହୋଟେଲ ଛାଡ଼ିଲୁ ହେଲେ···?

ପୀତବାସ—ହୋଟେଲ୍ ଛାଡ଼ିବ କ'ଣ ଶୁଣୁଛ ବୋଉ ! ସେ ଆଜି ଆମ ସମସ୍ତଙ୍କି ଛାଡ଼ି ଯାଉଛି—!

ଅଳକା—କ'ଣ ଛାଡ଼ି ଯାଉଛି ? ଆରେ ସାଗର, ତୋ' ଘର ଛାଡ଼ି, ତୁ କୁଆଡ଼େ ଯିବୁ ରେ ବାପା ? କାହା ପାଖକୁ ଯିବୁ ?

ସାଗର—ସାଗର ମରି ଯାଉ ମାଉସି ! ହେଲେ ତା' ପାଇଁ କେହି ଲୁହ ନ ଗଡ଼ାଉ । ଏ ରୋଗ ତ ମୋର ଭଲ ହବ ନାହିଁ, ଏଥି ମୋର ନିଦାନ ।

ଅଳକା—କି ଅଲକ୍ଷଣା କଥା ତୁ ତୁଣ୍ଡରେ ଧରୁଚୁ ! କେତେ କେତେ ରୋଗ ଭଲ ହଉଚି; ତୋର ଇମିତି କ'ଣ ହେଇଚି କି?

ପୀତବାସ—ସାଗର, ମୋ କଥା ମାନ । ଏ ରୋଗ ଦେହରେ କୁଆଡ଼େ ଯାଆ ନାହିଁ !

ସାଗର—ନା, ମଉସା ! ମୁଁ ଠିକ୍ କରି ନେଇଛି, ନିଶ୍ଚୟ ଯିବି । ମତେ ଯିବାକୁ ହି’ ହବ !

ଅଳକା—ଯିବୁ ! କୁଆଡ଼େ ଯିବୁ ? ତତେ ମୁଁ ମୋଟେ ଛାଡ଼ିବିନି ! (ପୀତବାସ ପ୍ରତି) ଠିଆ ହୋଇଛ କ’ଣ ମ ? ତାକୁ ଭିତରକୁ ନେଇ ଚାଲ ।

ସାଗର—ନା, ମାଉସି, ନା ।

ପୀତବାସ—ସାଗର, ଏତେ ମାୟା ଲଗେଇ ଦେଇ ତୁମେ ଚାଲିଯିବ ! ଏ ଦୁଃଖ ତ ମୁଁ ସହି ପାରିବିନି ବାପା ! ପ୍ରଭୁଙ୍କର ଏ ପୁଣି କି ବିଡମ୍ବନା ! ସାଗର, ତମ ସାଙ୍ଗରେ ମୋର ପରିଚୟ ନ ହୋଇଥିଲେ ଖୁବ୍ ଭଲ ହୋଇଥା’ନ୍ତା···ଉଃ ! ଦୁଃଖ କ’ଣ ଆମକୁ ଛାଡ଼ିବନି ଚାହୁଁବୋଉ ?

ସାଗର—ମୋର ସମୟ ହୋଇ ଯାଉଛି ! ମାଉସି, ନା—ନା, ତୁମେ ତ ମୋର ମାଉସି ନୁହଁ, ମା ! ତମରି କଲ୍ୟାଣରେ ମୋର ଏ ଜନ୍ମର ସବୁ କଳଙ୍କ ଧୋଇ ହୋଇ ଯାଉ ! (ପାଦ ଧୂଳି ନେଇ ଉଠିଲେ)

ଅଳକା—ସାଗର !

ସାଗର—ଆପଣ ମତେ ଟିକିଏ ଗାଡ଼ିରେ ବସେଇ ଦେଇ ଆସିବେନି ମଉସା ? ପିଲାଏ ବିଦେଶକୁ ଗଲେ, ବାପା-ମା ଯେମିତି ବସେଇ ଦେଇ ଆସନ୍ତି···(ପ୍ରସ୍ଥାନ)

ଅଳକା—ସାଗର, ସାଗର, ତୁ ଯାଆ ନାହିଁ—ତୋ ମା କଥା ଶୁଣ ସାଗର !

ପୀତବାସ—ଚାହୁଁ ବୋଉ, କାହାକୁ ଡାକୁଛ ? ରୁକୁଣାରଥ ଅଣ-ଲେଉଟା —(ବାହାରକୁ ଗଲେ ସାଗର ପଛରେ)

ଅଳକା—ଠାକୁରେ ! ମୋ ବେଗଣା ପିଲାଟିକି ତମର ହାତରେ ଦେଲି ଠାକୁରେ ! ସାଙ୍ଗରେ ତ ତା'ର କେହି ନାହିଁ । ତମେ ଇ' ତା'ର ସାହା ଭରସା ! (ସହସା ଡାକି ଡାକି ଅସୀତାର ପ୍ରବେଶ)

ଅସୀତା—ସାଗର, ସାଗର ! ତମକୁ ଅଜା ଡାକୁଚନ୍ତି ସାଗର ! ଆରେ, ସାଗର ତ ଏଠି ନାହିଁ ! ସାଗର କୁଆଡେ ଗଲା ଖୁଡ଼ି ?

ଅଳକା—ଚାଲିଗଲା ମା ! କାହାରି କଥା ଶୁଣିଲା ନ । ମୁଁ କହିଲି, ତୋ' ବାପା କହିଲେ, କାହାରି କଥା ସେ ରଖିଲା ନାହିଁ !

ଅସୀତା—ସାଗର···ଚାଲିଗଲା ? କାହିଁକି, ସେ ତ କାହାରି କିଛି କ୍ଷତି କରି ନ ! ସେ କାହିଁକି ଯିବ ! ନାହିଁ ଖୁଡି, ମୁଁ ତାକୁ ଫେରାଇ ଆଣିବି ! ସାଗରକୁ ଫେରିବାକୁ ହବ ! ଅଜା ! ଅଜା – ! (ଚାଲିଗଲେ)

ଅଳକା—ତୋ'ର କଥା ସତ ହଉ, ମା ! ସେ ପାଗଳା କମିତି ଫେରି ଆସୁ ! (ଆଖିରେ ଲୁହ)

—ପରଦା—

## —ପଞ୍ଚମ ଦୃଶ୍ୟ—

[ରେଲ ଷ୍ଟେସନ । ପ୍ଲାଟଫର୍ମ ସାମ୍ନା ରାସ୍ତା । ବୈଷ୍ଣବ ଜଣେ ଗୀତ ଗାଇ ଗାଇ ଚାଲିଗଲେ ସେଇ ବାଟରେ । ପୀତବାସ ବାବୁ ଧୀରେ ଧୀରେ ଆସି ଗଛ ମୂଳରେ ଛିଡ଼ା ହେଲେ ।]

### —ବୈଷ୍ଣବର ଗୀତ—

ହୋ, ହୋ, ମାଝି ହୋ—!
ଘୋର ଅନ୍ଧାର ଆସୁଛି ମାଡ ବାହି ନେ' ତୋର ନାଆ ।

ପାରି ଏପାରି ସଉଦା ହାଟ,
ଧର ସଅଳ ସେପାରି ଘାଟ
ବେଳ ଥାଉ ବେଗେ ପାଲ ବାନ୍ଧ ଦେ'—
ଏକା ଆସିଛୁ, ଏକା ତୁ ଚାଲ, କେହି ହେବେ ନାହିଁ ସାହା ।୧।

ସବୁ ମମତା ଦେ' ରେ ଏଡ଼ି...
ଖୋଲି ଦେ' ତୋର ନାଆ ମଙ୍ଗ ବେଡ଼ି !
ହାତ ଟାଣ କରି ମାରି ଦେ' କାତ—
ହେଳା କଲେ ତୁ ଗଡ଼ିବ ବେଳା, ଆସେ ଉଜାଣି ବାଆ ।୨।

ଚାହିଁ ପଶ୍ଚିମ ଆକାଶ ପଥେ
ରବି ଚଳେ ରେ କନକ ରଥେ ।
(ଏଇ) ଗୋଧୂଳି ଲଗନ ହରା ନା ବାବୁ !
ସେପାରି ଧାର ଧରିବୁ ଯେବେ ସଅଳ ସଅଳ ଯାଆ ।୩।

(ଗୀତ ପରେ ପରେ ଅସୀତା ଓ ଡ଼କ୍ଟର ଦାସ ଆସିଛନ୍ତି)

ଅସୀତା—ଦାଦା, ସାଗର କାହିଁ ? ତମ ସାଙ୍ଗରେ ଆସିଲା ପରା !

ପୀତବାସ—ହଁ, ମା !

ଡ଼ଃ ଦାସ—ପୀତବାସ, ସତକୁ ସତ ସାଗର କଣ ଏଇ ଟ୍ରେନ୍‌ରେ ଯାଉଚି ?

ପୀତବାସ—ଆଜ୍ଞା ।

ଡ଼ଃ ଦାସ—ତା'ର ଦେହ ଅସୁସ୍ଥ, ହଠାତ୍ ଇମିତି ସହର ଛାଡ଼ି ଚାଲି ଯିବାଟା...

ପୀତବାସ—କାହିଁକି ଯାଉଚି...ସେ କଥା ଆପଣ ଜାଣନ୍ତି, ମୁଁ ଜାଣେ, ଅତନୁ ବାବୁ ଜାଣନ୍ତି, ଆଉ ଅସୀତା ମା ବି ଜାଣେ । ହେଲେ କେହି ତାକୁ ରୋକି ପାରିଲେ ନି !

ଅସୀତା—ଦାଦା, ମୁଁ ତାକୁ ଯିବାକୁ ଦେବି ନି । ସେ କାହିଁ ?

ପୀତବାସ—କ'ଣ କହିବି ମା ! ଗୋଟାଏ ତୃତୀୟ ଶ୍ରେଣୀ ଡ଼ବାରେ ବସେଇ ଦେଇ ଆସିଲି । ଅବସ୍ଥା ତା'ର ଏତେ ଖରାପ ଯେ ଜାଣେନା ସେ ଗାଡ଼ିରୁ ଓହ୍ଲେଇବ କି ନା...

ଅସୀତା—ନା, ଦାଦା—ସାଗର ବଞ୍ଚିବ...ତାକୁ ବଞ୍ଚି ରହିବାକୁ ହବ ! ସାଗର ! ସାଗର ! ( ଟ୍ରେନ୍ ଛାଡ଼ିବା ସମୟରେ ଆସିଛନ୍ତି ଅତନୁ । ଦୂରରୁ ଟ୍ରେନ୍ ଚାଲିଯିବାର ଶବ୍ଦ ହେଲା ।)

ଅତନୁ—ସାଗର ! ସାଗର ! (ଥକ୍କା ହୋଇ ରେଲିଂକୁ ଧରି ଛିଡ଼ା ହେଲେ ଅତନୁ )

ଅସୀତା—ସାଗର ନାହିଁ ଅତନୁ , ସେ ଚାଲି ଯାଇଚି ! ତୁମେ ତାକୁ ମାରି ଦେଲ ଅତନୁ, ତୁମେ ତାକୁ ମାରି ଦେଲ । ଆମେ

ଦୁହେଁ ଇମିତ ବନ୍ଧୁ-ଦ୍ରୋହୀ ଯେ ଶେଷ ଦର୍ଶନ ବି ଆମ ଭାଗ୍ୟରେ ନାହିଁ !

ପୀତବାସ—ସାର୍, କ'ଣ କଲେ ! ଭ୍ରମରେ ପଡ଼ି ଆପଣ ଏ ଯୋଉ କ୍ଷତି କଲେ, ସେ କ୍ଷତି ଆଉ ପୂରଣ ହେବ ନାହିଁ ସାର୍ ! ସେ କ୍ଷତି ଅପୂରଣୀୟ ! ସାଗର ଆଜି ଆମ ସମସ୍ତଙ୍କୁ କଙ୍ଗାଳ କରି ଚାଲି ଯାଇଛି । ତା' ସାଙ୍ଗରେ ଏ ଜନ୍ମରେ ବୋଧ ହୁଏ ଆମର ଆଉ ଦେଖା ହବ ନାହିଁ । ନା, ନା, ଦେଖା ହବ ନାହିଁ ।
(ପ୍ରସ୍ଥାନ)

ଅସୀତା—ଅତନୁ, ଏତେ ବଡ଼ ଅଧଃପତନ ତୁମର ହେଲା କାହିଁକି ? ତୁମ ପାଇଁ ହସି ହସି ଯିଏ ଜୀବନ ଦେଇଥାନ୍ତା, ତା' ପ୍ରତି ଏତେ ନିଷ୍ଠୁର ଅବିଚାର ତୁମେ କଲ କାହିଁକି ?

ଅତନୁ—ସାଗର ! ତୋଉ ପାଦ ଛୁଇଁ ମୁଁ ପ୍ରତିଜ୍ଞା କରି ଥିଲି, ହେଲେ ତତେ ମୁଁ ଫେଟରେଇ ନେଇ ପାରିଲି ନି । ସାଗର ! ଯିବା ଆଗରୁ ମତେ କ୍ଷମା ବି ଦେଇ ଗଲୁ ନି ! ଭାରି ହତଭାଗ୍ୟ ମୁଁ ସାଗର, ମୋ ଠୁଁ ବଳି ଲକ୍ଷ୍ମୀଛଡ଼ା ଏ ପୃଥିବୀରେ ଆଉ କେହି ବୋଧହୁଏ ନାହିଁ ! ଉଃ !

ଅସୀତା—ଅତନୁ ! (ଅତନୁ ଓ ଅସୀତା ପରସ୍ପରକୁ ଚାହିଁ କାନ୍ଦିବା ସମୟେ ଦୁହିଁଙ୍କ ମଝିରେ ଆସି ଛିଡ଼ା ହେଲେ ଡକ୍ଟର ଦାସ ।)

ଡ଼: ଦାସ—Don't cry my dear child ! ନଅଁ ନେଇ ଆମେ ସମସ୍ତେ ପରୀକ୍ଷା ଆରମ୍ଭ କରିଥିଲୁଁ, ଆମେ ସମସ୍ତେ ଅକୃତକାର୍ଯ୍ୟ ହେଲୁ, ହେଲେ ସେଇ ଜଣକ କେବଳ ଉତ୍ତୀର୍ଣ୍ଣ ହୋଇ ବିଜୟ-ଗର୍ବରେ ବାହାରି ଗଲା ! ଏଥିରେ ତ ଆମର ଦୁଃଖ କରିବାର

କି ଲୁହ ଗଡ଼େଇବାର କଥା ନୁହେଁ ; ଆନନ୍ଦିତ ହବାର କଥା । ଆସ ଅଞ୍ଜନୁ, ଆ ମା ଅସିତା ! ଏଇ ବନ୍ଦାପୁ-ମଧୁର ଲଗ୍ନରେ ଆମେ ତିନିହେଁ ଆଜ ସେଇ ମହତ୍ ଆତ୍ମାର ଶୁଭ କାମନା କରିବା ! ଜୀବନର ଗାଢ଼ ଗ୍ଳାନି, କୁଆଡ଼େ ଗିଳ—କୋଉଠି ଅଠକବ—କି କ୍ଷୁଧା ନେଇ ସେ ଗ୍ଳାନି—ତା'ର ବନ୍ଧନକ ତ ଆମ୍ଭମାନେ ନୋହୁଁ, ଦୁଃଖ କାହିଁକି ?

( ଆଖିରୁ ତାଙ୍କର ଦ'ଟୋପା ଲୁହ ଗଡ଼ି ପଡ଼ିଲା । ସେ ଦୁହିଁଙ୍କୁ ନେଇ ଫେରି ଯାଉଥିଲେ ଡକ୍ଟର ଦାସ । )

ଯ—ବ—ନି—କା